# ସୂଚୀ



---

# ଆମ ସଂସ୍କୃତି ଓ ଆମେ

ଦେଶର ଡାକ ହେଉଛି ଆମର ବିବେକ । ଦେଶର ଅଭାବ ଓ ଆବଶ୍ୟକତା ହିଁ ଆମ ପାଇଁ ଆହ୍ୱାନ । ଆମେ ଓ ଆମ ଦେଶ ଗୋଟିଏ ସୂତ୍ରରେ ବନ୍ଧା । ଜାତିର ଧ୍ୱନି ଆମ ହୃଦୟର ପ୍ରତିଧ୍ୱନି ଓ ଆମ ଅନ୍ତରାତ୍ମା ଜାତିର ଜୀବାତ୍ମା । ଦେଶ ଓ ଦଶ ଏକ ଅଲଙ୍କାରର ସମ୍ପର୍କ ନୁହେଁ, ହୃଦୟାନ୍ତର୍ଗତର ପ୍ରତିଫଳନ । ସମଷ୍ଟି ଓ ବ୍ୟଷ୍ଟି କେବଳ ଏକ ସମାହାର ନୁହେଁ, ପ୍ରତ୍ୟେକ ପ୍ରତ୍ୟେକର ପ୍ରତିଜ୍ଞା ଓ ପ୍ରତିପାଦନ । ବ୍ୟକ୍ତିର ସାର୍ଥକତା ଓ ପ୍ରତିଭାର ପରିପୂର୍ଣ୍ଣତା ସର୍ବାଦୌ ସ୍ୱଦେଶରେ । ଏହା ଯେପରି ସତ୍ୟ, ପକ୍ଷାନ୍ତରରେ ସ୍ୱଦେଶ ଭାବନା ଏକ ବାସ୍ତବ ରୂପ ନିଏ ବ୍ୟକ୍ତିର ହୃଦୟ ତଥା ସମର୍ଥନରେ, ଏହା ସେପରି ସତ୍ୟ । ମାତା ଓ ଶିଶୁର ସମ୍ପର୍କ ପରି ଜନନୀ ଓ ଜନ୍ମଭୂମି ଆମପାଇଁ ଚିରନ୍ତନ ଆନନ୍ଦର ଉତ୍ସ । ଜନ୍ମ, ଜୀବନ ଓ ଜୀବନର ଚରମ ତଥା ପରମ ପରିଣତିରେ ଜାତି ଓ ଦେଶ ଆମର ଲୀଳାଭୂମି ।

ଅତଏବ ଆଜି ସଂସ୍କୃତି ପ୍ରଶ୍ନବାଚୀ କାହିଁକି ? ଜାତୀୟ ସଂସ୍କୃତି ପାଇଁ ଚିନ୍ତା କାହିଁକି ? ସଂସ୍କୃତି ଶକ୍ତିଦାୟିକା ଓ ଏହା ଜାଣି ସୁଦ୍ଧା ଆମେ ବିଭେଦଗ୍ରସ୍ତ କାହିଁକି ? ଆମ୍ଭମାନଙ୍କର ବିଭିନ୍ନ "ଘଟ"ର ବିଲୟ ଘଟିଲେ ସୁଦ୍ଧା ଘଟାକାଶ ଅନନ୍ତାକାଶରେ ପରିଣତ ହୋଇ-ଯାଏ । ଏହି ସାଂସ୍କୃତିକ ଚେତନାରେ ଆମେ ଚେତି ନଯାଇ "ଘଟ" ଓ "ମଠ"ର ବିଭିନ୍ନତା ଆମକୁ ଏପରି କାବୁ କରିଦେଇଛି କିପରି ? ଏହି ବିଭିନ୍ନତା ଆମ ପାଇଁ ଶ୍ୱାପଦ-ସଙ୍କୁଳ ଓ ରୋମାଞ୍ଚିତ ବିପଜ୍ଜନକ ଅରଣ୍ୟ ପରି ହୋଇଛି । ପଥିକ ପାଇଁ ଏହା ଏକ ଝଣାପରି, ଆମେ ବୁଝି ବଣା ହେଉଛୁଁ କଣ ମନୁଷ୍ୟ ପରି । ଏହି ବିଭିନ୍ନତାରେ ପ୍ରକୃତିଦତ୍ତ ବୈଚିତ୍ର୍ୟ ରହିଛି, ରୂପ, ରସ ଓ ଗନ୍ଧର ବିଭବ ରହିଛି । ଏହା ପରିବର୍ତ୍ତେ ଆମେ ବିଭୀଷିକା ଦେଖୁନାହୁଁ କି ?

କାହିଁକି ଓ କିପରି ପ୍ରଶ୍ନର ବିଶ୍ଳେଷଣ କରାଯାଇ ପାରେ । ଆମ ଦେଶ ଏକ ବିଶାଳ ଭୂଖଣ୍ଡ । ଏଥିରେ ଭାଷା, ଉପଭାଷା, ଧର୍ମ, ଗୋଷ୍ଠୀ, ସମ୍ପ୍ରଦାୟ, ରାଜ୍ୟ ଆଦିର ବିଭିନ୍ନତା ରହିଛି । ଏ ଦିଗରୁ ତଥା କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା, ଦାରିଦ୍ର୍ୟ, ଅଭାବ, ଅଶିକ୍ଷା, କୁଶିକ୍ଷା, କୁସଂସ୍କାର, ରୋଗ, ପରିବହନ ଓ ଗମନାଗମନରେ ଅସୁବିଧା, ଜାତିଭେଦ ଆଦି ଦୃଷ୍ଟିରୁ ବହୁ ଜଟିଳ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ଉନ୍ନୟନ ଓ ବିକାଶର ଧାରା ସର୍ବତ୍ର ସମାନ ନୁହେଁ ଓ କାରଣ ଅବାରିତ ରହୁନାହିଁ । ଆର୍ଥିକ ଅଭାବ ସହିତ ଉପଯୁକ୍ତ କାରିଗରୀ ଜ୍ଞାନ ଓ କୌଶଳ ପର୍ଯ୍ୟାପ୍ତ ପରିମାଣରେ ମିଳୁନାହିଁ । ଆଞ୍ଚଳିକ ବୈଷମ୍ୟ କ୍ରମେ ଉତ୍କଟ

ହେବାରେ ଲାଗିଛି । ଯୋଜନାର ବିକେନ୍ଦ୍ରୀକରଣ ସମ୍ପୂର୍ଣ୍ଣଭାବରେ କରାଯାଇନାହିଁ । ସ୍ୱାଧୀନତା ପ୍ରାପ୍ତିର ଉଲ୍ଲାସ ଆମ ମନରେ ଆକାଂକ୍ଷାର ଉଦ୍‌ଗୀରଣ ଓ ବିସ୍ଫୋରଣ ସୃଷ୍ଟିକରିଛି ଓ ଏଥି ସହିତ ଏସବୁ ଆକାଂକ୍ଷାର ପରିପୂରଣ ପାଇଁ ଅନୁରୂପ ସ୍ୱୟଂକ୍ରିୟ ବ୍ୟବସ୍ଥା ଓ ପ୍ରଚେଷ୍ଟା ନାହିଁ । ପୁନଶ୍ଚ ହିଂସା, ଅହମିକା, ଶୋଷଣ, ଅନ୍ୟାୟ ଓ ଅତ୍ୟାଚାର ଆଦି ଦ୍ୱାରା କ୍ଷମତା ଲାଭ ଓ ବସ୍ତୁବାଦୀ ସ୍ୱାର୍ଥ ସାଧନର ଜାଲ ବିସ୍ଫୋରକ ରୂପେ କାର୍ଯ୍ୟ କରୁଛି । ପରୀକ୍ଷିତ ମୂଲ୍ୟବୋଧ ଟଳମଳ ହେଉଛି ଓ ବିଜ୍ଞାନ ଆଧାରିତ ମାନବିକ ମୂଲ୍ୟବୋଧ ଅଧିରୂଢ଼ ହୋଇ-ପାରୁନାହିଁ । ନିର୍ଭୀକ ଓ ନିରପେକ୍ଷ ଭୋଟଦାନ ନାଗରିକର ପରମ ଓ ପବିତ୍ର କର୍ତ୍ତବ୍ୟ । କିନ୍ତୁ ଭୋଟଦାତା ଅନେକ ସ୍ଥଳରେ ଆତ୍ମବଳର ଅଭାବରୁ ପ୍ରଲୋଭନ ଓ ପରାଭବର ଶରବ୍ୟ ହୋଇପଡ଼ୁଛି । ଲୋକ ଶକ୍ତିର ବିକାଶ ନଘଟି ଆରୋପିତ ଅଲୌକିକତାରେ ବିଶ୍ୱାସ ଦିନକୁଦିନ ବୃଦ୍ଧି ପାଉଛି । ଏହା କ୍ରମେ ଦେଶବ୍ୟାପୀ ଓ ଦେଶଗ୍ରାସୀ ହୋଇଯାଇଛି । ସହଯୋଗ, ସଂଯମ, ସହିଷ୍ଣୁତା, ସହଯୋଗିତା, ସଦାଚାର ଆଦି ଗଣତାନ୍ତ୍ରିକ ମୂଲ୍ୟବୋଧ ଜୀବନ ଯାପନର ଅଙ୍ଗୀଭୂତ ନହୋଇ କୋର୍ଟ କଚେରିର ଶପଥ ପାଠ ପରି ଶବ୍ଦାଡ଼ମ୍ବରରେ ପରିଣତ ହୋଇଅଛି । ଏହା ଫଳରେ ନ୍ୟସ୍ତସ୍ୱାର୍ଥର ଅପରାଜେୟ ଦୁର୍ଗ ପରାଜୟ ସ୍ୱୀକାର କରୁନାହିଁ; କିନ୍ତୁ ସମୟର ଗତିରେ ଚିନ୍ତା ଓ ଚେତନାର ପରିବର୍ତ୍ତନ ଫଳରେ ବଞ୍ଚି ରହିବାର ଚରମ ସଂଗ୍ରାମ କରୁଛି । ଏପରି ସ୍ଥଳରେ ଜନ ଚରିତ୍ରର ବିକାଶ ପୂର୍ଣ୍ଣମାତ୍ରାରେ ହୋଇ-ପାରୁନାହିଁ । ଏପରି ସବୁ ଉପାଦାନ ଓ ଇନ୍ଧନ ଅନେକ, ବିଶ୍ଳେଷଣ ଅସରନ୍ତି; କିନ୍ତୁ ପରିଣତି ସ୍ଥାନ ତଥା କାଳ ଭେଦରେ ଭୟାବହ । କାର୍ଯ୍ୟ-କାରଣ ବେଶ୍ ଜଟିଳ; କିନ୍ତୁ ପ୍ରକାଶ କରିବାରେ ସରଳ । ଏହାର ସ୍ରଷ୍ଟା, ଦ୍ରଷ୍ଟା, କର୍ତ୍ତା ଓ ଭୋକ୍ତା ଆମେ, "ଆପଣ, ନହେଲେ ମୁଁ" କିମ୍ବା ଆମ ଭିତରୁ ଅନ୍ୟ ଜଣେ । ଏହାର ଭିଆଣ ଆମ ହାତରେ ଓ ଭୋଗିବା ଆମ ଦେହରେ । ସୁରକ୍ଷା ଓ ଶ୍ରୀବୃଦ୍ଧି ଆମର ଦାୟିତ୍ୱ । ଏକଥା ବାରମ୍ବାର ବୁଝିବା ଓ ସର୍ବଦା ହୃଦୟଙ୍ଗମ କରିବା । ଏ କଥାଟିର ମର୍ମକୁ ବିନେଇ ଚୂନେଇ ଫିଟେଇ ଦେଇଛନ୍ତି ପୂର୍ବତନ ରାଷ୍ଟ୍ରପତି ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍—ଜାତୀୟ ସମ୍ବିଧାନ ଇଟା ଓ ସିମେଣ୍ଟର କାମ ନୁହେଁ । ଏହା ବି ନିହାଣ ହାତୁଡ଼ିର କାମ ନୁହେଁ । ଏହା ଆମ ହୃଦୟ ଓ ମନ ମଧ୍ୟରେ ଧୀରେ ଧୀରେ ଜନ୍ମିବ ଓ ଜମାଟ ବାନ୍ଧିବ । ଏହାହିଁ ସମ୍ବିଧାନ, ଆମ ହୃଦୟର ସମ୍ବିଧାନ ।

ବ୍ୟଥା ବା ବ୍ୟର୍ଥତାରେ କିମ୍ବା ଲଗାମଛଡ଼ା ଭାବରେ ଆମେ ବେଳେବେଳେ ସମ୍ଭବତଃ ସବୁବେଳେ କହି ପକାଉ ଆଶା ରଖି—ଦେଶ ଆମ ପାଇଁ କଅଣ କରିଛି କି ? ରୋଟି ମାଟି, ମକାନ ଦେଇଛି କି ? ଚୂଲି, ଚାଉଳ, ଦାନା, କନା, ପାଣି, ଆଲୋକ ଓ ଆନନ୍ଦର ଦାବି ଆମେ କରୁଁ । ଏ ସବୁର ବ୍ୟବସ୍ଥା ଦେଶ କଲା କି ? ହାତୀ ଦେବି, ଘୋଡ଼ା ଦେବି, ମୋ ପେଁକାଳି ବଜାଇ ଦିଅ—କେତେ ତ ଶୁଣାଯାଇଛି । ପେଁକାଳି ତ ବାଜୁଛି; କିନ୍ତୁ ହାତୀ ଘୋଡ଼ା କାହିଁ ? ଦେଶ ଦେଲା କି ? ଶାସନ କଲା କି ? ସେତିକି ନୁହେଁ, ଧର୍ମପତ୍ନୀର ମୃତ୍ୟୁରେ ତାଙ୍କ ପରି ତାଜମହଲ ନିର୍ମାଣ କରୁଛନ୍ତି । କାବ୍ୟ ଓ ଇତିହାସର ପୃଷ୍ଠାରେ

ଏହାର ଯଶୋଗାନ ଉଚ୍ଛୁଳିପଡ଼ୁଛି । କିନ୍ତୁ ଅସହାୟ ମହିଳା ଅଭାବ, ଅନଟନ ଓ ଅନାହାରରେ ଶେଷ ନିଶ୍ୱାସ ଛାଡ଼ୁଛି, ମଶାଣି ଭୂଇଁ ବି ଦେଖିପାରୁନାହିଁ, ନିର୍ଲଜ୍ଜ ଶାଗୁଣା ଓ ଶୃଗାଳ ଗୋଷ୍ଠୀ କଡ଼ରେ ନିର୍ଭୀକତାର ପରିଚୟ ଦେଇ ଉଲଗ୍ନ ଶବ ଉପରେ ଅମାନୁଷିକ ଅତ୍ୟାଚାର-କରୁଛନ୍ତି । ଏହି ନିର୍ଭୀକତା ହୁଏତ ଆମକୁ ସ୍ପର୍ଶ କରୁଛି ଓ ଆମେ ଶଙ୍କିତ ହୋଇପଡ଼ୁଛୁ । କିନ୍ତୁ ଅମାନୁଷିକତା ପାଇଁ ପଦେ କଥା ଆମ ତୁଣ୍ଡରୁ ବାହାରୁନାହିଁ ଓ ଲେଖିବା ବେଳକୁ ଆମ କଲମରୁ କାଳି ଶୁଖିଯାଉଛି । ଏପରି ଦୃଶ୍ୟ ଓ ଦୃଷ୍ଟାନ୍ତ ଜାତୀୟ ନାଟକର ଆକର୍ଷଣୀୟ ହୋଇ ରହିଛି । ତେଣୁ ଆମ ଯଥାର୍ଥତା ହେଉଛି ଓ ଦାବି ରହୁଛି, ଦେଶ କଅଣ କରିଛି ? ଆମ ସ୍ୱଭାବ ହେଇଛି । କିନ୍ତୁ ଆମେ ଦେଶ ପାଇଁ କଅଣ କରିଛୁ ମୁହୂର୍ତ୍ତକ ପାଇଁ ଭାବୁଛୁ କି ? ବିଚାରକୁ ନେଉଛୁ କି ? ପ୍ରାୟ ଦେଢ଼ଶହ ବର୍ଷ ପୂର୍ବେ କବି ଭୀମଭୋଇ ପଚାରିଥିଲେ—"ଏ ଜନଜଗତ ହତ ହୋଇଗଲେ କାହିଁ ପ୍ରସ୍ତରିବ ମୁହିଁ ?" ସେଥିପାଇଁ ସେ ସର୍ବ ସମର୍ପଣ କରି ପ୍ରାର୍ଥନା କରିଛନ୍ତି, "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।" ଅର୍କକ୍ଷେତ୍ରରେ ଓ ଶ୍ରୀକ୍ଷେତ୍ରରେ ଏହି ଉଦାର ପରମ୍ପରାର କିମ୍ବଦନ୍ତୀ ଜନଜୀବନକୁ ଅନୁପ୍ରାଣିତ କରେ । ମୋର "ମୁଁତ୍ୱ" ସମ୍ପୂର୍ଣ୍ଣ ଧ୍ୱଂସ ପାଉ; ଦେଶ, ବିଶ୍ୱ, ଜୀବନ, ଜନସମାଜ ବିକଶିତ ହେଉ ଦିବ୍ୟ ସୌନ୍ଦର୍ଯ୍ୟରେ । ସ୍ୱାଧୀନତାର ସଂଗ୍ରାମୀ ସେଇମାନେ ଥିଲେ ଯେଉଁମାନେ ବ୍ରତ କରିଥିଲେ "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ" ଆହୁରି ମଧ୍ୟ "ଦେଶର ସ୍ୱରାଜ ପଥେ ଯେତେ ଗାଡ଼, ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।" ତ୍ୟାଗ, ସେବା, ସମର୍ପଣ ଆଦି ହେଉଛି ସ୍ୱାଧୀନତା ସଂଗ୍ରାମର ମହନୀୟ ଗାଥା; ଅଥଚ ଏହାର ଇତିହାସ ମୁଖ୍ୟତଃ ଏକ ନାମ ତାଲିକାରେ ପରିଣତ ହୋଇଛି ଓ ଏହାର ପାଠକ ସେସବୁକୁ ମୁଖସ୍ଥ କରି କାକବତ୍ ଆବୃତ୍ତି କରୁଛନ୍ତି । ପ୍ରାଣସ୍ପର୍ଶୀ ଉନ୍ମାଦନା କାହିଁ ! ଜାତି ଓ ବାପୁ କାହାନ୍ତି ? ଦେଶ ପ୍ରତି କର୍ତ୍ତବ୍ୟର ଚିନ୍ତା କାହିଁ ? କାଠି, କୁଟା, କଣ୍ଟା ଓ ଇଟା ରାସ୍ତାରୁ ଉଠାଇ ଦିଆଯାଇ ପାରିବ । "ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍, ପରଦାରେଷୁ ମାତୃବତ୍" ଅଭ୍ୟାସ କରିହେବ । ଦୀନ ଦୁଃଖୀ ଓ ଦରିଦ୍ରଙ୍କ ସେବାରେ ଲାଗି-ହେବ । ଜାତୀୟପତାକା, ସଂଗୀତ ଓ ସଙ୍କେତ ପ୍ରତି ସମ୍ମାନ ସହିତ ଶ୍ରୀବୃଦ୍ଧି ରହିବ । ଭାରତ ଓ ଭାରତୀ ଭାବନା ଶିଶୁଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣତନ୍ତ୍ରୀରେ ଝଙ୍କୃତ ହେବ, ଇତ୍ୟାଦି । ଏହି ଝଲଦିନ ତଳେ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଉଦ୍‌ବୋଧନ ଆମ ପ୍ରତି ଏକ ଆହ୍ୱାନ । ତାହା ହେଉଛି, "ଜାତିର ସେବା କରୁ କରୁ ଯଦି ମୋତେ ପ୍ରାଣବଳି ଦେବାକୁ ପଡ଼େ ତାହା ହେବ ମୋ ପାଇଁ ଗୌରବ । ମୋର ଦୃଢ଼ ବିଶ୍ୱାସ ଯେ, ମୋ ଦେହର ପ୍ରତିଟି ରକ୍ତବିନ୍ଦୁ ଏହି ଦେଶର ଅଭିବୃଦ୍ଧିରେ ସହାୟକ ହେବା ସଙ୍ଗେ ସଙ୍ଗେ ଏହାକୁ ଶକ୍ତିଶାଳୀ ଓ ଗତିଶୀଳ କରି ଗଢ଼ି ତୋଳିବ ।" ଏହା ଭୁବନେଶ୍ୱରର ଇତିହାସ ଓ ଇତିହାସର ଭୁବନେଶ୍ୱର ଭାରତ ତଥା ବିଶ୍ୱର ଇତିହାସ ଗଠନ କରିବ ।

ମୋ ନାଁ, ଗାଁ, ମା ଓ ମାଟି ମୋର ନିଶ୍ଚିତ ପ୍ରିୟତମ । ମୋ ପିତାଙ୍କ ପ୍ରାର୍ଥନା ମୋ ହୃଦୟର ସଂଖୋଳ । ମୋ ମା'ର ଭାଷା ମୋ ପ୍ରାଣର ଧନ ଓ ପିତୃପିତାମହଙ୍କ ଅଞ୍ଚଳ ମୋ ପାଇଁ ଗର୍ବ ଓ ଗୌରବ । ମୋ ଜନ୍ମମାଟି, ମୋ ଧର୍ମ ଓ ମୋ ଭାଷା ମୋ ପାଇଁ ପ୍ରେରଣାର ଚିରନ୍ତନ ଉତ୍ସ । ଏହା ମୋର ଯେପରି ଅଛି, ଅନ୍ୟମାନଙ୍କର ସେପରି । ମୁଁ ଯେତିକି ସମ୍ମାନ ଦେବି ଅନ୍ୟମାନେ ସେମାନଙ୍କର ଜନ୍ମମାଟି, ଧର୍ମ ଓ ଭାଷାକୁ ସେତିକି ସମ୍ମାନ ଦେବେ । ଏହା ମୋତେ ଗ୍ରହଣ କରିବାକୁ ହେବ । ଏହା ସହିଷ୍ଣୁତାର କଥା । ଏହାଛଡ଼ା, ଧର୍ମ ଧରିତ୍ରୀକୁ ଧରିରଖେ । ପ୍ରେମ, ଭ୍ରାତୃତ୍ୱ, ସତ୍ୟ, ସହିଷ୍ଣୁତା, ସମ୍ମାନ ଆଦି ମାନବିକ ସଦ୍‌ଗୁଣର ଶିକ୍ଷା ଧର୍ମରୁ ମିଳେ । ବିଭିନ୍ନ ଧର୍ମର ଏସବୁ ମୂଳମନ୍ତ୍ର । ଘୃଣା, ପାପାଚାର, ବିଦ୍ୱେଷ, ହିଂସା, କପଟତା ଆଦି ଦୁର୍ଗୁଣ ଧାର୍ମିକତାର ପରିଚାୟକ ନୁହେଁ । ଭାରତର ସଂସ୍କୃତି, ସଂହତି ଓ ଆତ୍ମା ବିଭିନ୍ନ ଅଞ୍ଚଳର ଗୌରବ ଓ କୃତିର ସମାହାର । ଆଞ୍ଚଳିକ, ଭାଷାଗତ ଓ ଧାର୍ମିକ ବିଭିନ୍ନତା ଦ୍ୱାରା ଭାରତୀୟ ଜୀବନ ପରିପୁଷ୍ଟ । ବିଭିନ୍ନତାରେ ଏକାତ୍ମତା ଓ ଅଭିନ୍ନତା ହେଉଛି ଆମ ସଂହତି । ଏହା ଐକ୍ୟର ପ୍ରତିପାଦନ କରେ । "ମିଳିମିଶି ଶିଂଘ ଫଟା, ଯୁଝିଲ ବେଲକୁ ଗୋଟା"—ଏହା ଯୁଗେ ଯୁଗେ ଆମର ନୀତି ହୋଇଛି । ସେତିକି ନୁହେଁ, "ବସୁଧୈବ କୁଟୁମ୍ବକମ୍" ଆମର ଧର୍ମ; "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ" ବୋଲି ଆମେ ବିଶ୍ୱକୁ ସମ୍ବୋଧନ କରିଛୁ । ରବୀନ୍ଦ୍ରନାଥଙ୍କ ଶାନ୍ତି ନିକେତନ "ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ମ" ହୋଇଛି । ଆମ ଜାତୀୟ ଅଖଣ୍ଡତା ଏହି ବିଶାଳ ଭୂଖଣ୍ଡର ଆତ୍ମା । ଏହା ଆମ ଦେଶର ଶାନ୍ତି, ପ୍ରଗତି, ସମୃଦ୍ଧି ଓ ଆଧୁନିକୀକରଣ ପାଇଁ ଏକାନ୍ତ ଆବଶ୍ୟକ । ଜାତି, ବର୍ଣ୍ଣ, ଭାଷା, ଅଞ୍ଚଳ, ସମ୍ପ୍ରଦାୟ ଓ ଧର୍ମ ନିର୍ବିଶେଷରେ ଆମେ ସବୁ ଭାରତବାସୀ ଏକ । ଆମେ ଭାରତର ଓ ଭାରତ ଆମ ଭାରତୀୟଙ୍କର । ଆମର ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳଗୁଡ଼ିକ ବିଭିନ୍ନ ହେଲେହେଁ କାଶ୍ମୀରରୁ କନ୍ୟାକୁମାରୀ, ଗୁଜରାଟରୁ ଆସାମ ସମଗ୍ର ଭାରତ ଏକ ଓ ଅଭିନ୍ନ । ଭାରତ ଜନନୀର ସନ୍ତାନ ଆମେ ସମସ୍ତେ ଭାଇଭଉଣୀ ପରି । ପିତାମାତା ଓ ଭାଇଭଗ୍ନୀର ସମ୍ବୋଧନ ଆମ ସମସ୍ତଙ୍କୁ ସ୍ପର୍ଶ କରେ, ଆପଣାର କରିଦିଏ । ଏଥିରେ ଧନ, ମାନ, ଯଶ, ପୌରୁଷ, ଶିକ୍ଷା, ଦୀକ୍ଷାର ବିଚାର ନଥାଏ । ଏସବୁ ଆମକୁ ପୃଥକ୍ କରିପାରେ ନାହିଁ । କାରଣ ବସ୍ତୁତଃ ଆମ୍ଭେମାନେ ଏକ ବୃହତ ପରିବାରର ଭାରତୀୟ । ଅସ୍ପୃଶ୍ୟତା ଆମ ଜାତିର ଏକ ଅବିସ୍ମୃତ କଳଙ୍କ ହୋଇଅଛି । ଏହାର ଅଳୀକତା ସମ୍ବନ୍ଧରେ ଆଜି କାହାରିକୁ ବୁଝାଇବାର ଆବଶ୍ୟକତା ନାହିଁ । କିନ୍ତୁ ଅନେକ କ୍ଷେତ୍ରରେ ଆମେ ବୁଝିଛୁ, ତଥାପି ପରମ୍ପରାର ବନ୍ଧନରୁ ପୂରାପୂରି ନିଜକୁ ମୁକ୍ତ କରିପାରୁନାହୁଁ । ଆଜକୁ ପ୍ରାୟ ୭୫ ବର୍ଷ ପୂର୍ବେ ଗୀତାଞ୍ଜଳିରେ ପ୍ରକାଶିତ 'ଦୁର୍ଭାଗ୍ୟ ଦେଶ' ଶୀର୍ଷକ ଏକ ସୁପରିଚିତ କବିତାରେ ବିଶ୍ୱକବି ରବୀନ୍ଦ୍ରନାଥ ସମାଜର ଦଳିତ ଶ୍ରେଣୀଙ୍କ ଉପରେ କରାଯାଉଥିବା ଅତ୍ୟାଚାର ବିରୁଦ୍ଧରେ ସମଗ୍ର ଦେଶକୁ ସତର୍କ କରିଦେଇଥିଲେ ଓ ସେମାନଙ୍କୁ ଅନ୍ତରଙ୍ଗତା ସହକାରେ ଆଲିଙ୍ଗନ କରିବାକୁ ଅନ୍ୟମାନଙ୍କ ସମୀପରେ ଦୃଢ଼ ଯୁକ୍ତି କରିଥିଲେ । ଏହାର

ଯଥେଷ୍ଟ ପୂର୍ବରୁ ସ୍ୱାମୀ ବିବେକାନନ୍ଦଙ୍କ ପରି ଅନେକ ସାଧୁସନ୍ଥ ମଧ୍ୟ ସେମାନଙ୍କୁ ଅବହେଳିତ ନ କରିବାକୁ ସତର୍କ କରିଥିଲେ । ଗାନ୍ଧିଜୀ ସେମାନଙ୍କ ପାଇଁ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ସେମାନଙ୍କୁ ହରିଜନ ଆଖ୍ୟା ଦେଇଥିଲେ । ସେମାନଙ୍କ ସପକ୍ଷରେ ରାଜନୈତିକ ଓ ସାମାଜିକ ଆନ୍ଦୋଳନ କରିବା ସଙ୍ଗେ ସଙ୍ଗେ ସର୍ବୋଦୟ ସମାଜର ପ୍ରତିଷ୍ଠା ପାଇଁ ଶିକ୍ଷା ଆଦି ଗଠନାତ୍ମକ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ । ଆଜି ହରିଜନ ଓ ଗିରିଜନମାନଙ୍କୁ ସାମାଜିକ ନ୍ୟାୟ ଦେବା ପାଇଁ ଶିକ୍ଷା, କର୍ମସଂସ୍ଥାନ ଆଦିର ବ୍ୟବସ୍ଥା କରାଯିବା ଉଚିତ । ସମାଜ, ବିଦ୍ୟାଳୟ ଓ ପରିବାର ପରସ୍ପର ପରିପୂରକ ହୋଇ ଗଣତାନ୍ତ୍ରିକ ଗବେଷଣାଗାରରେ ପରିଣତ ହେବା ଉଚିତ ।

ଏହି ପ୍ରସଙ୍ଗରେ Nani A. Palkhivalaଙ୍କ ଆଲୋଚନା ଉଲ୍ଲେଖନୀୟ । ସେପ୍ଟେମ୍ବର ଆଠ ଉଣେଇଶ ପଞ୍ଚାଅଶୀ Sunday Statesmanର Miscellanyରେ Redesigning India for the 21st Century ଶୀର୍ଷକ ଆଲୋଚନାରେ ଏପରି ଏକ ବିଶାଳ ବିଷୟର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଦିଗ ଥିଲେହେଁ ପୁନର୍ଗଠିତ ଭାରତର ସାତ ଗୋଟି ସ୍ତମ୍ଭ ଉପରେ ସେ ପ୍ରାଧାନ୍ୟ ଦିଅନ୍ତି । ତନ୍ମଧ୍ୟରୁ ଜାତୀୟ ଏକାତ୍ମତା ତାଙ୍କ ମତରେ ସର୍ବ ପ୍ରଧାନ । ଆମ ଦେଶରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ମରାଠୀ, ତାମିଲ ଆଦି ଭାଷାଭାଷୀ ଲୋକ ଅଛନ୍ତି—କିନ୍ତୁ ଅତ୍ୟଳ୍ପ ଭାରତୀୟ । ସଙ୍କୀର୍ଣ୍ଣ ଆନୁଗତ୍ୟ ଓ ସାଂପ୍ରଦାୟିକ ବିଚ୍ଛିନ୍ନତାବାଦ ଆଜି ଆମ ରାଷ୍ଟ୍ରନୀତିରେ ପରିଣତ ହୋଇଛି ଓ ଏହା ଜାତୀୟ ବିଭାଜନର ନିଶ୍ଚିତ ସଙ୍କେତ । ପାକିସ୍ଥାନ ବା ଚାଇନା ଆଜି ଭାରତର ଅତି ଶକ୍ତିଶାଳୀ ଶତ୍ରୁ ନୁହେଁ; କିନ୍ତୁ ଭାରତୀୟମାନେ ନିଜେ ନିଜର ପରମ ଶତ୍ରୁ । ଭାରତୀୟମାନେ ଯେପରି କରିପାରିବେ, କୌଣସି ଶତ୍ରୁ ଭାରତକୁ ଏତେ ଫଳପ୍ରଦ ଭାବରେ ଦୁର୍ବଳ କରି ପାରିବ ନାହିଁ । ଆମେ ହିଁ ଆମର ଶତ୍ରୁ । ତେଣୁ ଆଲୋଚକଙ୍କ ମତରେ ବିଭିନ୍ନ ଭାଷା ଓ ରାଜ୍ୟ ମଧ୍ୟରେ ପରସ୍ପର ନିର୍ଭରଶୀଳତା ସୃଷ୍ଟି କରିବା ସର୍ବାଦୌ କର୍ତ୍ତବ୍ୟ । ସେହିପରି ଭାବରେ ଭାରତର ପୁନର୍ଗଠନ ପାଇଁ ଆଇନ ଓ ଶୃଙ୍ଖଳାରକ୍ଷା, ପରିବାର ନିୟନ୍ତ୍ରଣ, ଶିକ୍ଷା, ସାମ୍ବିଧାନିକ ଆନୁଗତ୍ୟ, ଜନତନ୍ତ୍ର (egalitarianism) ଓ ସମାଜ ଦୃଷ୍ଟିରୁ ଦାୟିତ୍ୱ-ସମ୍ପନ୍ନ ବ୍ୟବସାୟ ବାଣିଜ୍ୟ ଉପରେ ସେ ଗୁରୁତ୍ୱ ଆରୋପ କରନ୍ତି । ବସ୍ତୁତଃ ଆମର ଏକାନ୍ତ ପ୍ରୟୋଜନ ଜାତୀୟ ଚରିତ୍ର । ବୁଦ୍ଧିମତ୍ତା ସମ୍ବଳିତ ଚରିତ୍ରବତ୍ତା ଓ ସମର୍ପିତ ସାଧୁତା ସେଥିରେ ରହିବ । ଏହାହିଁ ମୌଳିକ ଭାରତୀୟ ଭାବନା । ଏହା ଆବେଗିକ ସମ୍ବନ୍ଧର ରୂପ ନେବ । ଏହା ହେବ ଜାତୀୟ ସମ୍ବନ୍ଧ । ଗୋଷ୍ଠୀ ସଙ୍ଗୀତ, ଯୁବ ଶିବିର, ପରିଭ୍ରମଣ, ବିଭିନ୍ନ ଅଞ୍ଚଳର ଗୌରବ ଗାଥାର ପର୍ଯ୍ୟାଲୋଚନା ଆଦି କାର୍ଯ୍ୟକ୍ରମ ଅଧିକ ମାତ୍ରାରେ ଓ ନିଷ୍ଠାରେ କରାଯାଇ ପାରେ । ମୂଳ ସୂତ୍ରଟି ହେବ—ଆମେ ଭାରତୀୟ । ଅତୀତର ଗୌରବାବହ ପରମ୍ପରା, ସମସ୍ୟାବହୁଳ ବର୍ତ୍ତମାନ ଓ ଭାବୀ ଆହ୍ୱାନର ଦୃଢ଼ ସମ୍ମୁଖୀନତା ହେବ ଆମର ଧ୍ୟେୟ ଓ ଧ୍ୟାନ ।

ଏ ଦିଗରେ ଗଣମାଧ୍ୟମର ସୁଦୂରପ୍ରସାରୀ ସମ୍ଭାବନା ଆମର ପ୍ରଭୂତ କଲ୍ୟାଣ ସାଧନ କରିବ । ବ୍ୟକ୍ତିତ୍ୱର ସୁସଂହତ ସମନ୍ୱୟ ସାଧନ କରାଯିବ ଓ ଏଥି ସହିତ ଜାତୀୟ ଐକ୍ୟକୁ ପରିପୁଷ୍ଟ କରାଯିବ । ବସ୍ତୁତଃ ଏହା ହେବ ବ୍ୟକ୍ତିଚେତନାର ସଂପ୍ରସାରଣ । ବ୍ୟକ୍ତି ଜୀବନର ନିଷ୍ଠା ସହିତ ଜାତୀୟ ମମତା ଓ ବିଶ୍ୱଜନପ୍ରୀତିର ଅବାଧ ମିଳନ ଓ ପରିଣତି ସାଧିତ ହେବ ।·

ପକ୍ଷାନ୍ତରରେ ବ୍ୟାପକ ଦୃଷ୍ଟିରୁ ବିଚାର କରାଗଲେ ଜାତୀୟ ସଂହତିର ଦୃଢ଼ୀକରଣ ଓ ଉନ୍ନତି କରିବା ପାଇଁ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏ କଥା ସତ୍ୟ ଯେ ଏହି ସମସ୍ୟାର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଦିଗ ରହିଛି । ଶିକ୍ଷାର ଭୂମିକା ବିଷୟରେ ଆଲୋକପାତ କରାଗଲାବେଳେ ଉକ୍ତ ଦିଗଗୁଡ଼ିକ ପ୍ରତି ସମଧିକ ଧ୍ୟାନ ଦିଆଯିବା ଉଚିତ । ସବୁ ଦିଗରୁ ବିଚାର କରି ଏ ପ୍ରକାର ଆଭ୍ୟନ୍ତରୀଣ ଅବସ୍ଥା ଓ ପରିବେଶ ସୃଷ୍ଟି କରାଯିବ ଯେଉଁଥିରୁ ଉଦ୍‌ଭୂତ ହେବ ଶୃଙ୍ଖଳିତ ଓ ଐକ୍ୟବଦ୍ଧ ଜାତୀୟ ଜୀବନ । ଆତଙ୍କ-ବାଦରୁ ମୁକ୍ତରହି ଲୋକଶକ୍ତି ଉପରେ ଆଧାରିତ ସୁସ୍ଥିର କିନ୍ତୁ ପ୍ରଗତି ସହାୟକ କର୍ମନିଷ୍ଠା ଓ ଚରିତ୍ରର ବିକାଶ କରାଯିବ । ସେଥିପାଇଁ ଶିକ୍ଷା ଓ ଜାତୀୟ ସଂହତି କୁହାଯାଉଛି ଜାତୀୟ ସଂହତି ପାଇଁ ଶିକ୍ଷା ବା ଶିକ୍ଷା ମାଧ୍ୟମରେ ଜାତୀୟ ସଂହତିର ବିଚାର କରାଯିବ । ପ୍ରାଥମିକ ଶିକ୍ଷାସ୍ତରଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶିକ୍ଷାସ୍ତର ପର୍ଯ୍ୟନ୍ତ ସମଗ୍ର ଶିକ୍ଷା ଯୋଜନାକୁ ତିନୋଟି ଦିଗରେ ଅଭିମୁଖୀ କରିବା ପାଇଁ ଜାତୀୟ ସଂହତି ପରିଷଦର ସାନ୍ଦ୍ରେଗଡ଼କର ସବ୍‌କମିଟି (୧୯୬୮) ସୁପାରିଶ କରିଥିଲେ । ସେ ତିନୋଟି ଦିଗ ହେଉଛି-(୧) ଭାରତୀୟ ଭାବଧାରା, ସଂହତି ଓ ଐକ୍ୟ ସୃଷ୍ଟି କରାଯିବ, (୨) ଗଣତାନ୍ତ୍ରିକ ମୂଲ୍ୟବୋଧ ସମ୍ବନ୍ଧରେ ଶିକ୍ଷା ଦିଆଯିବ ଓ (୩) ପ୍ରଚଳିତ ପାରମ୍ପରିକ ସମାଜକୁ ରୂପାନ୍ତରିତ କରି ଆଧୁନିକ ସମାଜ ସୃଷ୍ଟିରେ ସାହାଯ୍ୟ କରାଯିବ । ଏଯାବତ୍ ଆମ ଶିକ୍ଷା ଯୋଜନାର ଏ ଦିଗରେ ମୌଳିକ ଅଭିମୁଖୀକରଣ ଆଶାନୁରୂପ ସମ୍ଭବ ହୋଇପାରିନାହିଁ ।

ଜାତୀୟ ସଂହତି ବିଷୟରେ ଆମକୁ ଶିକ୍ଷା ଦେବାପାଇଁ ଏହାକୁ କୌଣସି ନିର୍ଦ୍ଦିଷ୍ଟ ପାଠ୍ୟ ବିଷୟ ବା ପିରିଅଡ଼୍‌ର ଅନ୍ତର୍ଭୁକ୍ତ କରିଦେଲେ ଚାଲିବନାହିଁ କିମ୍ବା କୌଣସି ଜଣେ ଶିକ୍ଷକଙ୍କ କାର୍ଯ୍ୟର ଅଙ୍ଗୀଭୂତ କରିଦେଲେ ହେବନାହିଁ । ସମଗ୍ର ଶିକ୍ଷା, ଶିକ୍ଷାସ୍ତନ ଓ ଶିକ୍ଷକବର୍ଗ ଏଥିରେ ଅନୁରଞ୍ଜିତ, ଅନୁପ୍ରାଣିତ ଓ ଅନୁପ୍ରବିଷ୍ଟ ହେବା ଉଚିତ । ତଥାପି ପାଠ୍ୟ-କ୍ରମର କେତୋଟି ପାଠ୍ୟ ବିଷୟ ଅଛି ଯେଉଁଥିରେ ଜାତୀୟ ସଂହତି ଭଲଭାବରେ ସ୍ଥାନ ପାଇ-ପାରିବ । ସେସବୁ ବିଷୟ ହେଉଛି ଇତିହାସ, ଭୂଗୋଳ, ସମାଜବିଜ୍ଞାନ, ଭାଷା ଇତ୍ୟାଦି । ବିଭିନ୍ନ ସଂପ୍ରଦାୟ ଓ ଅଞ୍ଚଳ ଆଦି ମଧ୍ୟରେ ପରସ୍ପର ନିର୍ଭରଶୀଳତା ବିଷୟରେ ଶିକ୍ଷାଦିଆଯାଇ-ପାରିବ । ବ୍ୟକ୍ତିଗତ ଚିନ୍ତା ପରିସୀମା ଓ ଆନୁଗତ୍ୟକୁ କ୍ରମେ ସଂପ୍ରସାରିତକରି ରାଷ୍ଟ୍ରବ୍ୟାପୀ ଓ ବିଶ୍ୱବ୍ୟାପୀ କରିବାକୁ ହେବ । ବିଭିନ୍ନ ଭାଷାର ଗଦ୍ୟ, ପଦ୍ୟ, କାବ୍ୟ ଓ କବିତାରେ କିଜକୁ ଓ କିଜ ପରିସୀମାକୁ କେନ୍ଦ୍ରକରି ବିଷୟ ଥାଏ । ବୟସର ବୃଦ୍ଧି ଓ ବୁଦ୍ଧି ଅଭିବୃଦ୍ଧି

ଫଳରେ ଏହାକୁ କ୍ରମେ ପ୍ରସାରିତ କରାଯାଇଥାଏ । ଏହି କ୍ରମପ୍ରସାରଣରେ ଶିକ୍ଷକ ସହାୟକ ହେବେ ଓ ଅନୁକୂଳ ପଦ୍ଧତି ଅବଲମ୍ବନ କରିବେ । ଏଠାରେ ନିମ୍ନୋକ୍ତ ଶ୍ଲୋକ ସ୍ମରଣୀୟ—

"ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ ମିତ୍ରସ୍ୟା ହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ । ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ।"

ସମସ୍ତେ ମୋର ମିତ୍ର ହୁଅନ୍ତୁ । କେହି ମୋତେ ଛଲେହେଲେ ଶତ୍ରୁ ନକରନ୍ତୁ । ଆହୁରି ମଧ୍ୟ ମୁଁ ଶତ୍ରୁଶୂନ୍ୟ ହୋଇ ସମସ୍ତ ଚରାଚର ଜଗତକୁ ନିଜର ପ୍ରାଣ ତୁଲ୍ୟ ଜ୍ଞାନକରେ ।

---

# ସମାଜ ଓ ସଦାଚାର

"ଯହିଁ ଅନାଇଲେ ତହିଁ ପୂରିଛନ୍ତି କଳି ପୁରୁଷର ଆଟ"—ପ୍ରାୟ ଶହେ ବର୍ଷ ତଳର ଏହି ଲେଖା ଆଜି ସୁଦ୍ଧା ସତ୍ୟ ପରି ମନେହୁଏ । ଗୁରୁ ମହିମା ସ୍ୱାମୀଙ୍କୁ ଜଣାଇ ଭକ୍ତ ଭୀମଭୋଇ ସୁଦ୍ଧା କରିଥିଲେ, ସତ୍ୟ, ଶାନ୍ତି, ଦୟା ଓ କ୍ଷମାର ପ୍ରତିଷ୍ଠା ପାଇଁ; ବ୍ୟକ୍ତି ତଥା ସମାଜରେ ସତ୍ୟ ଓ ସଦ୍ଭାବନାର ବିକାଶ ପାଇଁ । ରାଗ, ହିଂସା, ବାଦ, ଛଳ, କୁଟ, କପଟ, ଲୋଭ ଆଦି ଆସୁରିକ ଲକ୍ଷଣଗୁଡ଼ିକ କଳିପୁରୁଷର ଆଟ । ଏମାନେ ସର୍ବତ୍ର ପ୍ରସାରିତ ହୋଇଛନ୍ତି । କିମ୍ବଦନ୍ତୀ ଖେଳରୁ ମହାଭାରତର ଇତିହାସ ସୁଦୂର ଅତୀତର ବିଷୟ । କିନ୍ତୁ ଏହା ଆଜି ଆମ ଦୈନନ୍ଦିନ ଜୀବନର ପ୍ରତି ମୁହୂର୍ତ୍ତର ଘଟଣା । ଅନ୍ୟାୟ ଓ ଅତ୍ୟାଚାରର ବେଗ ମାତ୍ରାଧିକ ଲାଗୁଛି । ଧନ ଉଜୁଡ଼ି ଯାଉଛି । ଅଧିକ ଚିନ୍ତାର ବିଷୟ ହେଉଛି ଜୀବନ ହାନି । ବିଶ୍ୱ ସୃଷ୍ଟିରେ ଜୀବନର ସଞ୍ଚାର ମନୁଷ୍ୟକୃତ ନୁହେଁ । ଏହା ମନୁଷ୍ୟାତୀତ ଓ ଏଥିରେ ସୀମାହୀନ ସମ୍ଭାବନା ରହିଛି । ପୁଷ୍ପର ସୁବାସ ପରି ଜୀବନର ସମ୍ଭାବନା ଏକ ନୈସର୍ଗିକ ଧର୍ମ । ଜୀବନର କ୍ଷୟ ଆଖିପିଛୁଳାକେ ଘଟିଯାଉଛି ଓ ସମଗ୍ର ମାନବ ସମାଜର ସମ୍ପୂର୍ଣ୍ଣ ବିନାଶ ପାଇଁ ଆୟୋଜନ ଅବିରତ ଚାଲିଛି । ପ୍ରତିଟି ଜୀବନ-ଦୀପ ଲିଭିବା ଫଳରେ ପ୍ରତିଭାଲୋକ କ୍ଷୀଣ ହୋଇଯାଏ । ଅନ୍ଧକାର ମାଡ଼ିଆସେ । ଅପମୃତ୍ୟୁର ଅମାପ ସଂଖ୍ୟା ଦେଶ ଓ ସମାଜର କଳଙ୍କ । ଏସବୁ ଆଣି ଦିଏ କଦାଚାର ଓ କଳୁଷିତତା । ଭୀମଭୋଇ ପୁଣି ବ୍ୟଥା ପ୍ରକାଶ କରିଛନ୍ତି—"ଦେଖି ଏ ଅନ୍ୟାୟ କର୍ମ ଅଛି ଦେହି, ବାୟୁର ଆଘାତେ ତୃଣ ପରି ।" କଳିର କୋଳମଞ୍ଜି କଣ୍ଟକିତ ଗୁଳ୍ମ କମ୍ବା ଗଛରେ ପରିଣତ ନ ହୋଇ ଏକ ମହାଦ୍ରୁମ ରୂପେ ଦଣ୍ଡାୟମାନ । ବଟବୃକ୍ଷର ଓହଳ ଓହଳଯାଇ ସହସ୍ର ସ୍ୱତନ୍ତ୍ର ବଟବୃକ୍ଷ ପରି ଅନ୍ୟାୟ, ଅନୀତି ଓ ଆତଙ୍କ ସାରା ବିଶ୍ୱରେ ପ୍ରସର ଯିବାରେ ଲାଗିଛି । ସର୍ବତ୍ର ସମସ୍ତେ ଆତଙ୍କିତ ଓ ଭୟାକୁଳ । 'ସତ୍ୟମେବ ଜୟତେ, ନାନୃତଂ', ଆମର ଘୋଷଣା । ଆମ ଜାତୀୟ ସଙ୍କେତ । ଏହି ସଙ୍କେତ ଆମ ଜୀବନଧାରା ହେବା ଉଚିତ । ସେଥିରେ ଆମ ସ୍ନାନ, ଭୋଜନ, ଶୟନ ପ୍ରଭୃତି ଜୀବନ ଓ ଜୀବିକା ପରିଚାଳିତ ହେବା ଦରକାର । ଏତେବେଳେ ପୁଣି ମନେପଡ଼େ :

"ସତ ଯେ କହିବ, ମାଡ଼ ସେ ଖାଇବ, ମିଥ୍ୟାର ହୋଇବ ଜୟ,
ସାଧୁ ବନ୍ଧା ହେବେ, ଚୋର ଖସିଯିବେ, ଦେଖ ଏ କଳିର ନ୍ୟାୟ ।"

କେତେ କାଳ ଏହା ଚାଲିବ ? ମାନବକୁଳ କଅଣ ବୁଡ଼ିଯିବ ? ପୃଥିବୀ କଅଣ କେବଳ ବାଳୁଙ୍ଗା ଚପିବେ ? ସତ୍ୟର ସନାତନ ଧାରା କଅଣ ଏ ଯୁଗରେ ଓଲଟପାଲଟ ହେବ ?

ଭାଗବତକାରଙ୍କ ବାଣୀ ଅନୁସାରେ ଆମେ କଅଣ ଆପଣା ହାତରେ ଆମ ଜିହ୍ୱା ଛେଦିବା ଓ ଆମର କେହି ପ୍ରତିବାଦୀ ରହିବେ ନାହିଁ ? ଯଦୁବଂଶ ନାଶ ପରି ଆମେ କଅଣ ବିନାଶ ସାଧନ କରିବା ? ଏ ସବୁ ପ୍ରଶ୍ନର ଏକ ଦୃଢ଼ ନାସ୍ତିକ ସୂଚକ ଉତ୍ତର । ବିଂଶ ଶତାବ୍ଦୀରେ ସର୍ବନାଶର ମାରାତ୍ମକ ସାଧନ ହେବା ପରିବର୍ତ୍ତେ ସର୍ବୋଦୟର ଆତ୍ମଶକ୍ତି ଓ ଆତ୍ମଜ୍ଞାନ ବଢ଼ି ବଢ଼ି ଚାଲିବା ଉଚିତ । ଜ୍ଞାନ ବିଜ୍ଞାନର ଅଭୂତପୂର୍ବ କ୍ରମବର୍ଦ୍ଧିଷ୍ଣୁ ପ୍ରଗତି ଏହି ଦୁଇ ଦିଗରେ ଆମ ମନ ଓ ବୁଦ୍ଧିକୁ ଦୋହଲି ଲଗାଇ ଟାଣୁଛି । କେଉଁ ଦିଗରେ ଆମେ ଧାଇଁବା ଆମ ବିଚାର ଉପରେ ନିର୍ଭର କରେ--ବିନାଶ ନା ବିଜୟ—ସର୍ବନାଶ ନା ସର୍ବୋଦୟ । ଏଠି ଦୁଇ ନାଆରେ ପାଦ ରଖିଲେ କେଉଁ ଆଡ଼କୁ ହୋଇ ପାରିବା ନାହିଁ । କଣ୍ଢେଇ ପାଇଁ ଜିଦ୍ ଧରିଥିବା ପିଲାମାନଙ୍କର ମନ ମନ ଭୁଲାଣିଆ କଥାରେ ଭୁଲିଯାଏ । ଆମେ କଅଣ ସେତିକି ବିଚାର କରିପାରିବା ନାହିଁ ? ସ୍ୱାଧୀନ ଦେଶ ଭାବରେ ଆମର ପ୍ରାୟ ଚାଳିଶ ବର୍ଷର ଅଭିଜ୍ଞତା ହେଲାଣି । ଧର୍ମ, ସାହିତ୍ୟ, ଶିକ୍ଷା, ଦର୍ଶନ ଓ ସଂସ୍କୃତି କ୍ଷେତ୍ରରେ ଆମର ସର୍ବ ପ୍ରାଚୀନ ପରମ୍ପରା ଓ ଐତିହ୍ୟ ରହିଛି । ଆମ ସ୍ୱାଧୀନତା ସଂଗ୍ରାମର ସ୍ୱତନ୍ତ୍ର କୌଶଳ ଓ ବିଚାରଧାରା ଆଜି ବିଶ୍ୱବକ୍ଷରେ ଆଦୃତ । ପୂର୍ବପୁରୁଷମାନଙ୍କ ତ୍ୟାଗ, ସଂଯମ, କର୍ତ୍ତବ୍ୟପରାୟଣତା ଓ ଉତ୍ସର୍ଗ ସ୍ୱର୍ଣାକ୍ଷିତ ଯୁଗରୁ ଚିରପ୍ରବହମାନ ହୋଇ ଏଯାଏଁ ମନ୍ଦାକିନୀର ଧାରା ପରି ସ୍ୱଚ୍ଛ ଓ ସାବଲୀଳ ହୋଇ ରହିଛି । ତେଣୁ ଏସବୁ ଧାରାକୁ ଅଶଙ୍କ ନିକର ଶିରୋଧାର୍ଯ୍ୟ କଲେ ଆମେ କଦାପି ଧ୍ୱଂସମୁଖୀ ହେବା ନାହିଁ । ବରଂ ଗଠନଶୀଳ ଭୂମିକା ଗ୍ରହଣ କରିବା । ଆମେ ସେଥିରେ ଉଦ୍‌ବୁଦ୍ଧ ହୋଇ "ବସୁଧୈବକୁଟୁମ୍ବକମ୍" ଏ ଯୁଗରେ ବାସ୍ତବ କରି ପାରିବା । "ସର୍ବଜନହିତେରତାଃ" ହେବ ଆମ ପାଇଁ ସ୍ୱଧର୍ମ । ଇନ୍ଦ୍ରିୟ ସଂଯମ ଏ ଦିଗରେ ଆମକୁ କୌଶଳ ରୂପେ ଗ୍ରହଣ କରିବାକୁ ହେବ । "ଜାତୀୟ ମମତା" ସହିତ ବିଶ୍ୱଜନ ପ୍ରୀତିର ସମନ୍ୱୟ ଆମେ କରିପାରିବା ।

ଏହାହିଁ ହେବ ସମାଜରେ ସଦାଚାର । ସଦାଚାର ସୁଶୋଭିତ ସମାଜ, ଏହା ସୁନିଶ୍ଚିତ ଯେ ସର୍ବତ୍ର ଯୁଗେ ଯୁଗେ ସଦାଚାରୀ ବ୍ୟକ୍ତି ଅଛନ୍ତି । ସେମାନେ ସ୍ୱ ସ୍ୱ ସ୍ତରରେ ଏକନିଷ୍ଠ ରହିଛନ୍ତି । ସେଥିପାଇଁ ଅଶେଷ କ୍ଳେଶ ଆନନ୍ଦରେ ବରଣ କରିଛନ୍ତି । ସ୍ୱକୀୟ ସାଧନା ଅନୁସାରେ ସମ୍ପର୍କିତ ବ୍ୟକ୍ତି ଜନପଦ, ସମାଜ, ଦେଶ ଓ ବିଶ୍ୱକୁ ସେହି ସମୟରେ ବା କିଛି କାଳ ପାଇଁ ପ୍ରଭାବିତ କରିଛନ୍ତି । ଅନେକ ସଦାଚାରୀ ମଧ୍ୟ ଅରଣ୍ୟ ତୁଳସୀ ପରି ଲୋକ-ଲୋଚନକୁ ଆସିପାରିନାହାନ୍ତି । କାଳର ବକ୍ଷରେ ସେମାନଙ୍କ ପଦଚିହ୍ନ ବି ଅସ୍ପଷ୍ଟ ହୋଇ ବିଭିନ୍ନ ମାତ୍ରାରେ ରହିଯାଇଛି । କିନ୍ତୁ ସଦାଚାରୀ ସମାଜ କାହିଁ ? ବିଶେଷ କରି ଆଜିକାଲି ବ୍ୟକ୍ତି ଓ ସମାଜ ମଧ୍ୟରେ ପରସ୍ପର ସହାୟକ ନିଗୂଢ଼ ସମ୍ପର୍କ ରହିଛି ଓ ଏହାର ଆବଶ୍ୟକତା ଏକାନ୍ତ ଅନୁଭୂତ ହେଉଥିବା ସ୍ଥଳେ ସଦାଚାରୀ ବ୍ୟକ୍ତି ଯେତେ ପ୍ରୟୋଜନୀୟ ସମାଜରେ ସଦାଚାର ସେତେ ବା ତତୋଽଧିକ ଆବଶ୍ୟକ । ବ୍ୟକ୍ତି ଓ ସମାଜ ପରସ୍ପର ମଧ୍ୟରେ ସହଯୋଗ ଓ ସମ୍ପର୍କ ରହିଥିବା ଦୃଷ୍ଟିରୁ ଉଭୟ ଏକକାଳୀନ ସଦାଚାରୀ ହେବା

ଫଳରେ ଗଣ ସୁନିର୍ଦ୍ଧିଷ୍ଟ ହେବ ଓ ଉଭୟ ସ୍ୱକୀୟ ଅନନ୍ୟସାଧାରଣ ପ୍ରତିଭାରେ ବିକାଶ ଲାଭ କରିପାରିବେ । ନିଜ ନିଜ ମଧ୍ୟରେ ତଥା ଉଭୟ ମଧ୍ୟରେ ବ୍ୟକ୍ତି ଓ ସମାଜ ଦ୍ୱନ୍ଦ୍ୱ, ଅପବାଦ, ଅପଚେଷ୍ଟା ଓ ଅପଚୟରୁ ରକ୍ଷା ପାଇପାରି ପାରିବେ । ଦୁଃଖର କଥା, ଆମେ ବ୍ୟକ୍ତି ପାଇଁ ସଦାଗ୍ଭରର ବିଧାନ ଯେତେ କରୁ, ସମାଜ ପାଇଁ ସଦାଗ୍ଭରର ବିଧାନ ଓ ବ୍ୟବସ୍ଥା ସେତେ କରୁ ନାହିଁ । କିନ୍ତୁ ସଦାଗ୍ଭର ଆଚରଣର ଚିଜ ହୋଇଥିବାରୁ ବ୍ୟକ୍ତିର ଜୀବନରେ ସଦାଗ୍ଭର ଯେତେ ଆବଶ୍ୟକ, ସାମାଜିକ ଜୀବନରେ ସେତେ ବା ତତୋଽଧିକ ଆବଶ୍ୟକ । ତେଣୁ ସମାଜ ଓ ସଦାଗ୍ଭର ପୃଥକ୍ ବିଗ୍ଭର୍ଯ୍ୟ ନହୋଇ ସମାଜରେ ସଦାଗ୍ଭର ଏକାନ୍ତ ବିଗ୍ଭରଣୀୟ ।

ସମାଜ ସୃଷ୍ଟିର ଆଦି କାଳରେ ଅଖଣ୍ଡ ବ୍ୟକ୍ତିତ୍ୱ ସମ୍ଭବତଃ ସମସ୍ତଙ୍କର ସହଜାତ ଧର୍ମ ଥିଲା । ଆଜି ମଧ୍ୟ ଏହା ସ୍ୱପ୍ନ ହେଲେହେଁ କେତେକଙ୍କଠାରେ ଏହା ଆଦର୍ଶ ଓ ଜୀବନର ଧାରା ହୋଇ ରହିଛି । ଯେଉଁଦିନ ମନୁଷ୍ୟ ତା'ର ଅଙ୍ଗିକ ଓ ଆତ୍ମିକ ଦିଗ ମଧ୍ୟରେ ଭିନ୍ନତା ଅନୁଭବ କରିଛି ସେ ଦିନଠାରୁ ବ୍ୟକ୍ତିତ୍ୱ ଖଣ୍ଡିତ ଓ ବିଭକ୍ତ ହୋଇଯାଉଛି । ପାର୍ଥିବ ସଭ୍ୟତାର ଅଭିବୃଦ୍ଧି ଫଳରେ ସେ ବହିରାବରଣ ପ୍ରତି ଅଧିକ ଧ୍ୟାନ ଦେଇଛି । ଅନ୍ତରର ଅନାବିଳତା ସେ ହରାଇ ବସିଛି । ଦର୍ପଣ ଧୂଳିକଣା ଆଚ୍ଛନ୍ନ ହେବାରୁ ଏହାର ସ୍ୱାଭାବିକ ସ୍ୱଚ୍ଛତା ନଷ୍ଟ ହୋଇଗଲା ପରି ଅନ୍ତରର ଆହ୍ୱାନ ଓ ଦ୍ରଷ୍ଟା ପରି ସେ ଦୃଷ୍ଟି ହରାଇ ବସିଛି । ଜନବହୁଳ ସମାଜରେ ବ୍ୟକ୍ତି ତା'ର ସ୍ୱକୀୟତା ଓ ସ୍ୱାତନ୍ତ୍ର୍ୟ ହରାଇ ଦିଏ । ସେ ଯନ୍ତ୍ରଚାଳିତ ମନୁଷ୍ୟ ହୋଇଯାଏ । କେବଳ ନାମ, ରୂପ, ପଦ ପଦବୀ ଆଦି ଦ୍ୱାରା ପରିଚିତ ହୁଏ । ବାକ୍ତା, ବୁଦ୍ଧି, ଧନ, ସମ୍ପତ୍ତି ଆଦି ତା'ର ମହତ୍ତ୍ୱର ପରିଗ୍ଭୟକ ହୁଏ । ଅଗଣିତ ଲୋକଙ୍କ ମଧ୍ୟରେ ତା'ର ଗଣନା ସଂଖ୍ୟାରେ ବା ଏସବୁର ପରିମାଣରୁ ଜଣାପଡ଼େ । ଏହା ଫଳରେ ସେ ବ୍ୟକ୍ତିକୈନ୍ଦ୍ରିକ ଓ ସ୍ୱାର୍ଥପରବଶ ହୋଇପଡ଼େ । କଳେ-ବଳେ-କୌଶଳେ ସେ ସହଜରେ ଓ ସ୍ୱଳ୍ପ ସମୟରେ ଶକ୍ତି ପ୍ରାଧାନ୍ୟ ଉପଭୋଗ କରିବାକୁ ବ୍ୟାକୁଳ ହୁଏ । ତ୍ୟାଗ, ନିଷ୍ଠା ଓ ଚରିତ୍ର ବଦଳରେ ଭୋଗ, ବିଳାସ ଓ ଶୃଙ୍ଖଳାହୀନତା ତା'ର ଧ୍ୟେୟ ହୋଇଯାଏ । ଏପରି ସ୍ଥିତିରୁ ଅହଙ୍କାର ମନରେ ଜମିଯାଏ । ସେ ଆତ୍ମପରିଚୟ ଦେଇନପାରି ଆତ୍ମ ବିଜ୍ଞାପନ ପାଇଁ ଅଧୀର ହୁଏ । ଏପରି ଏକ ବିରୋଧାଭାସ ଦ୍ୱାରା ତାର ଅଖଣ୍ଡ ବ୍ୟକ୍ତିତ୍ୱ ପରସ୍ପର ବିରୋଧୀ ଦ୍ୱିଖଣ୍ଡିତ ହୋଇ-ଯାଏ । ସେ ଯାହା ନୁହେଁ ଦେଖାଇ ହେବାର ପ୍ରଯତ୍ନ କରେ । ଅର୍ଥାତ୍ ତା'ର ଅନ୍ତରାତ୍ମା ଏକ-ପ୍ରକାର ହୋଇଥିବା ସ୍ଥଳେ ତା'ର ବଚନ, ବସ୍ତ୍ର, ଭୂଷଣ ଓ ବହିରାବରଣ ସମ୍ପୂର୍ଣ୍ଣ ଓଲଟା ହୋଇଯାଏ ।

ଏହି ପ୍ରସଙ୍ଗରେ ପୁଣ୍ୟାତ୍ମା ପଣ୍ଡିତ ଗୋପବନ୍ଧୁଙ୍କ ସ୍ୱୀକାରୋକ୍ତି ଅବଶ୍ୟ ସ୍ମରଣୀୟ । "ମିଥ୍ୟାଗ୍ଭରୀ ନହୋଇ ସଦାଗ୍ଭରୀ ହେବା, ନିଜେ ଯାହା ସେପରି ବୋଲି ଦେଖିବାକୁ ଏହି-ଦିନୁଁ ଅଭ୍ୟାସ କରିବା, ଏଥିରେ ଯେଉଁ ପରିଣତି ଓ ସାଧୁ ଆତ୍ମମର୍ଯ୍ୟାଦା ଅଛି, ତାହା ଭଲ କରି ବୁଝିବା ଓ ସେହି ଅନୁସାରେ କାର୍ଯ୍ୟ କରିବା" । କିନ୍ତୁ ଉପରର ଛଳନା ସେତ

ଅନ୍ୟମାନଙ୍କୁ ଉପଦେଶ ଦେବାର ପ୍ରବଳ ତାଡ଼ନା ତାଙ୍କମନ ମଧ୍ୟରେ କାର୍ଯ୍ୟ କରେ। ସମାଜରେ ସଦାଚାର ବିଷୟରେ ଚିନ୍ତା କଲେ ଏହି ସଙ୍କଟର ସମ୍ମୁଖୀନ ହେବାକୁ ପଡ଼େ । ନିଜକୁ, ନିଜ ପରିବାରକୁ ଓ ଶିକ୍ଷାଦୀକ୍ଷା ଏଥିରେ ଜଡ଼ିତ ନକରି ସର୍ବଦା ଅନ୍ୟ ପାଇଁ ଅନ୍ୟ ପରିବେଶ, ଅନ୍ୟର ଶିକ୍ଷାଦୀକ୍ଷା ଉପରେ ଗୁରୁତ୍ୱ ଦେଇ ଦିଆଯାଏ । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ସମସ୍ତଙ୍କ ସଦାଚାର ଶିକ୍ଷାଳୟର ସମସ୍ୟା ହୋଇଯାଇଛି । ବସ୍ତୁତଃ ଶିକ୍ଷାଳୟର ଏ ଦିଗରେ ମୁଖ୍ୟ ଦାୟିତ୍ୱ ରହିଛି ସତ୍ୟ, କିନ୍ତୁ ଯେଉଁ ବ୍ୟକ୍ତିବିଶେଷ, ସଂଗଠନ ଓ ସମାଜ ଏହାକୁ ଶିକ୍ଷାଳୟ ଉପରେ ଲଦି ଦେଉଛନ୍ତି ସେମାନେ ସର୍ବାଦୌ ନିଜକୁ ଏଥି ସହିତ ସାମିଲ କରୁନାହାନ୍ତି କାହିଁକି ? ନିଜେ ସଦାଚାରୀ ନହୋଇ ପାପାଚରଣର ସଙ୍କଟ କାଳରେ ନିଜ ପାପର ପୃଷ୍ଠାଗୁଡ଼ିକୁ ଆଉ କିଛି ଦିନ ଅଛପା ରଖି ଫାଇଦା ଉଠେଇବା ଆଶାରେ ସେମାନେ ଶିକ୍ଷାଳୟକୁ, ଶିକ୍ଷକଙ୍କୁ ଓ ଶିକ୍ଷାର୍ଥୀଙ୍କୁ ସଦାଚାରୀ ହେବା ପାଇଁ ପ୍ରବଳ ଝଡ଼ ସୃଷ୍ଟି କରୁନାହାନ୍ତି କି ? ଏହାର ଚଳଣି ଏତେ ବେଶୀ ହେଲଣି ଯେ, କୌଣସି ବ୍ୟକ୍ତି ବା ସଂଗଠନ ସଦାଚାରର ପ୍ରଚାର କରୁଥିବାବେଳେ ସେ ଯେ ନିଶ୍ଚିତ ଭାବରେ ମିଥ୍ୟାଚାରୀ ହୋଇଥିବେ ଓ ଏହା ହେବା ସ୍ୱାଭାବିକ, ଆମେ ଅତି ସହଜରେ ମାନିନେଉଛୁଁ । ଫଳରେ ଆମ ପ୍ରଚାରର ଅଭିଯାନ ଏକ ନିଷ୍ଫଳ ପ୍ରୟାସ ହୋଇଯାଇଛି ଓ ପାପାଚରଣ ହିଁ ସମାଜର ଅନୁସୃତ ପନ୍ଥା ରୂପେ ସୁଦୃଢ଼ ରହିଛି ।

ସମାଜରେ ଦିନେ ଥିଲା ଓ ଏବେ ବି ନିଶ୍ଚିତ ଭାବରେ ସ୍ୱଳ୍ପାଂଶରେ ଥିଲେ ହେଁ ଏଥିପ୍ରତି ଆମ୍ଭମାନଙ୍କର ବ୍ୟାକୁଳତା ରହିଛି । ଆଧୁନିକ ସଙ୍ଗୀତ ଯେତେଦୂର ମନମତାଣିଆ, ଉଦ୍ଭଟ ଓ ଅଶ୍ଳୀଳ ହେଉ ପଛକେ ଭଜନର ଲୋକପ୍ରିୟତା ଅର୍ଜନ କରିପାରିନାହିଁ । ଭଜନ ପ୍ରତି ହୃଦୟର ଆବେଗ ରହିଛି । କର୍ପୂର ଉଡ଼ିଯାଇଛି କିନ୍ତୁ ସେ ଛିଣ୍ଡା କନାଟି ପ୍ରତି ଆମର ମମତା ରହିଛି । ଆତ୍ମାର ଡାକ ଆମେ ଶୁଣିନେ କି ? ଏହା କିପରି ଆମେ ଶୁଣିବା ? ଏ ଜିଜ୍ଞାସା ପ୍ରତି ଆମର ମୋହ ରହିଛି । ଦେଶଦେଶାନ୍ତରର ପରିବ୍ରାଜକ ଅନୁସନ୍ଧାନ ଆଶାରେ ଆମ ପୁରପଲ୍ଲୀକୁ ଆଶ୍ରୟ କରନ୍ତି । ଏବେ ବି ପଲ୍ଲୀଜନନୀ କଣ୍ଠରୁ ତା'ର ଶିଶୁ ପ୍ରତି ଉଦ୍‌ବୋଧନ ରୂପେ ଶୁଣାଯାଏ—"ଥିଲେ ଥାଉ ପଛେ ଗୁଣ ହଜାର, ଚରିତ୍ର ନଥିଲେ ସବୁ ଅସାର ।" ସକଳ ଗୁଣର ମୁକୁଟମଣି ହେଉଛି ଚରିତ୍ର । ଏଥିପାଇଁ ସବୁ ଶିକ୍ଷା, ଦୀକ୍ଷା ଲାଳନ ଓ ପାଳନ, ଏହା ସୃଷ୍ଟି କରିପାରେ ବିଶ୍ୱମାନବିକତା । ସମାଜର ସାଂପ୍ରତିକ ସ୍ଥିତିରେ ଏହି ଧ୍ୟେୟ ଧ୍ରୁବତାରା ସଦୃଶ ଚିର ଜାଜ୍ଜ୍ୱଲ୍ୟମାନ ହୋଇ ରହୁନାହିଁ । ସେଥିପାଇଁ ସାଧନାର ବ୍ରତ ଅଟଳ ହୋଇ ରହୁନାହିଁ । କ୍ଷମତାର ଖେପା-ଜାଲରେ ଆଜି ସମସ୍ତେ ଆବଦ୍ଧ । ଅର୍ଥଲିପ୍ସା, ସ୍ୱାର୍ଥସେବା ଓ ଭୋଗ ପିପାସା ଆମକୁ କବଳିତ କରି ପକାଇଛି । କ୍ଷମତାର କୁଣ୍ଡରେ ଅବଗାହନ ଆମର ସର୍ବସ୍ୱ ହୋଇଛି । ଏହା ନର୍କକୁଣ୍ଡ ବୋଲି ଜାଣିଥିଲେ ହେଁ ଏହାର ପ୍ରଲୋଭନ ଆମକୁ ଗ୍ରାସ କରିପକାଉଛି । ସତ୍ୟ, ଅହିଂସା, ତ୍ୟାଗ ଓ ସହିଷ୍ଣୁତା ଆମ ରତ୍ନଗର୍ଭା ସଂସ୍କୃତି ସାଗରର ଅମୂଲ୍ୟ ମୂଲ୍ୟବୋଧ । ଏଥିପାଇଁ ନିର୍ମଳ ଚିତ୍ତ ଓ ଆତ୍ମଶୁଦ୍ଧି ଏକାନ୍ତ ଆବଶ୍ୟକ । ଆମ ସାଧାରଣ

ଜୀବନ ଓ ବ୍ୟକ୍ତିଗତ ଜୀବନ ମଧ୍ୟରେ ସମନ୍ୱୟ ଓ ସମତା ରହିବା ଉଚିତ । ବୁଦ୍ଧ, ମହାବୀର, ଗାନ୍ଧି ପ୍ରମୁଖ ସ୍ମରଣୀୟ ମହାପୁରୁଷମାନେ ଜୀବନର ସର୍ବବିଧ ସାଧନାରେ ଏହାକୁ ଅଗ୍ରାଧିକାର ଦେଇଛନ୍ତି । ଅନ୍ତଃକରଣର ସ୍ପନ୍ଦନ ଓ ମୁଖର ବଚନକୁ ଏକ କରିଛନ୍ତି । ଏହାହିଁ କାୟମନୋବାକ୍ୟରେ ସହିତ । ଏହାହିଁ ଏକୀକରଣ । ଏହା ଫଳରେ ସମାଜର ସଦାଚାର ଓ ସମାଜରେ ସଦାଚାର ସମ୍ଭବ ହେବ—ଅନ୍ୟଥା ଏହା ପ୍ରଚାର ହୋଇଯିବ । ଏହାର ପ୍ରତିଷ୍ଠା ପାଇଁ ଜନ ଓ ଗଣମାଧ୍ୟମକୁ ବ୍ୟବହାର କରାଯିବ । କାରଣ ଏସବୁର ଧ୍ୟେୟ ହେଉଛି ବ୍ୟକ୍ତି ତଥା ସମାଜର ଯୁଗପତ୍ ପରିବର୍ତ୍ତନ । ଅତୀତ ସହିତ ଅଧୁନାର ସୁସମ୍ପର୍କ ସ୍ଥାପନ କରି ଭବିଷ୍ୟତର ରୂପରେଖକୁ ସୁଦୃଢ଼ କରାଇବା । ଏତକ ନକରି ପାରିଲେ ଆମେ ବଚନ ବୀର ହୋଇ ରହିବା ଓ ଆମେ ଯେ ଅନ୍ତଃସାରଶୂନ୍ୟ ଏହା ସହଜରେ ଲୋକଲୋଚନକୁ ଆସିଯିବ ।

ତେଣୁ କଳଙ୍କ ଓ କଳୁଷରେ ଆମେ ଘାରି ଓ ଘୋରି ହୋଇନଯାଇ ଆମେ ଅମ୍ଳନଷ୍ଠ ସଦାଚାରୀ ହେବା । ଚିତ୍ତ ଶୁଦ୍ଧିର ବ୍ରତରେ ବ୍ରତୀ ହେବା । ପ୍ରତିଟି ମୁହୂର୍ତ୍ତର ଧ୍ୟାନ ଓ ମନ ରହିବ ଏଥିରେ । ଆମେ କହିବା "ମିତ୍ରସ୍ୟ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍", ସକଳ ପ୍ରାଣୀକୁ ମିତ୍ର ଚକ୍ଷୁରେ ଦେଖିବା । ସମସ୍ତଙ୍କ ସହିତ ମିଳିମିଶି ସର୍ବାନ୍ତଃକରଣରେ ପ୍ରାର୍ଥନା କରିବା :

ସମାନୀ ବ ଆକୂତି, ସମାନା ହୃଦୟାନି ବଃ ।
ସମାନମସ୍ତୁ ବୋ ମନୋ ଯଥା ବଃ ସୁସହାସତି ।।

ଆମ୍ଭମାନଙ୍କର ଧ୍ୟେୟ ସମାନ ହେଉ । ହୃଦୟ ସମାନ ହେଉ । ମନ ସମାନ ହେଉ । ଏହି ସବୁ ଫଳରେ ଆମ୍ଭେମାନେ ସମାନ ସୁଯୋଗ ଓ ଉପଭୋଗ ପ୍ରାପ୍ତହେବା ।

---

# ଆପଣେ ଆଚରି ଧର୍ମ ଅପରେ ଶିଖାଏ

ଜୀବନ ଯାପନ କରିଯାଏ । ପିଲାକୁଟିମୁଁ ସନ୍ଧ୍ୟା ଚଳିବାକୁ ପଡ଼େ । ଯାହାପଦ୍ଧତିରେ ଯାହାମେଳ ସରସ କରେ ଜୀବନକୁ । ଦୁଃଖ ଓ ସୁଖ ଆସେ, ଏକ ପରେ ଅନ୍ୟଟି ବା ଉଭୟର ଲୁଚକାଳିରେ । ସେହିପରି ମଧ୍ୟ ହର୍ଷ, ବିଷାଦ ଓ ଉଦାସୀନତା । ଲୁଣରୁଣ, ଲୁଗାପଟା, ଚୂଲିଚୁଲ—ଏମିତି ଭିତରେ ଜୀବନର ଚକ ଗଡ଼ିଯାଏ । ସେଥିରେ ବି ଥାଆନ୍ତି ଆଇଲାଗଲା ଓ ଅତିଥି ଅଭ୍ୟାଗତ । ଜୀବନର ଏହି କୋଣ ଖଣ୍ଡେ ଇତିହାସ, ପୋଥିପୁରାଣ ଓ ଧର୍ମକର୍ମର ଶାସ୍ତ୍ର । ଏହାକୁ ଲେଖୁଛି କିଏ ? ଲେଖିବା ପାଇଁ ତ ଜୀବନ ନୁହେଁ । କେତେକ ଟିପାଖାତା ଥାଏ । ସେଥିରୁ ଆମ ସଂସ୍କୃତିର ଗନ୍ତାଘର ହୁଏ । କିନ୍ତୁ ଜୀଇବାରୁ ଜୀବନ, ଲେଖିବାରୁ ନୁହେଁ । ଲେଖିବାରୁ ଲିଖନ ଓ ଲେଖନ । ଜୀଅନ୍ତା ଜୀବନ ଏସବୁ ଆବଶ୍ୟକ କରେ । ମାତ୍ର ଏଥିପାଇଁ ଜୀବନ ନୁହେଁ ।

ଆଜିକାଲି ଜୀବନ ପ୍ରଚାର-ସର୍ବସ୍ୱ ହୋଇଯାଉଛି । ସାଇନବୋର୍ଡ଼ ମରାଯାଉଛି । ବିଜ୍ଞାପନ ଦିଆଯାଉଛି । ଟିକିଏ କଥାରେ ମାଇକ ବାଜୁଛି । ନାହିଁ ନଥିବା ଲୋକଭିଡ଼ ହେଉଛି । କଅଣ ଗୋଟାଏ ହେଉଛି ବୋଲି ଲୋକଙ୍କୁ ଜଣାଇଦିଆଯାଉଛି । କିଛି ନହେଉ, ଉଦ୍ଦେଶ୍ୟ ହେଲା କିଛି ହେଉଛି ବୋଲି ପ୍ରଚାର କରିବା । ଶୁଣାଯାଏ, ଜଣେ କେହି ବନ୍ଧୁ, ସଭାରେ କିଛି କହିବେ ବା ଅନ୍ୟ ପ୍ରକାର କହିଥାନ୍ତି, ସଭାକୁ ଆସିବା ପୂର୍ବରୁ ଲେଖି ଖବରକାଗଜକୁ ଦେଇଦିଅନ୍ତି । ଆଜିକାଲି ଏପରି ବନ୍ଧୁଙ୍କର ସଂଖ୍ୟା ବଢ଼ିଗଲାଣି । ଖବର-କାଗଜ, ରେଡ଼ିଓ, ଟେଲିଭିଜନ ପ୍ରଭୃତି ଗଣମାଧ୍ୟମ ବିଜ୍ଞାନର ଦାନ ହେତୁରୁ ବିକାଶ ଲାଭ କରିଛି । ଏହାକୁ ଛାଡ଼େ କିଏ ? ଶସ୍ତା ଓ ସହଜ ଉପଯୋଗ ହେଉଛି ପ୍ରଚାର ଓ ଆତ୍ମପ୍ରଚାର । ଡେଙ୍ଗୁରା ପିଟିବା ହେଉଛି କାମ । ସ୍ୱାଗତଗାନ ସଙ୍ଗୀତ, ଭାବ ଓ ଭକ୍ତି ବିବର୍ଜିତ ଆୟୋଜନ— ଏମିତି ସବୁ ଚମକୁଟା । ବହୁ ଆଡ଼ମ୍ବରରେ ଲଘୁକିର୍ତ୍ତି ପରି ଜଣାଯାଉଛି । ତାଳମେଳ ନଥିବା ନାଚ ପରି ଅଖାଡ଼ୁଆ ଲାଗୁଛି । ମନ ମାନୁ ନାହିଁ ଓ କେହି ମନକୁ ମନାଉ ନାହିଁ । ଏସବୁ ମହାକାଳ ଫଳ ପରି, ଲାଲ ଟୁକୁ ଟୁକୁ ଉପର ଓ ଭିତରଟା ଏକାବେଳକେ ପୋଡ଼ା ଅଙ୍ଗାର ।

ଆଚରଣ କଲେ ସିନା ଆମେ ଜୀବନ-ନିଷ୍ଠ ଓ ଧର୍ମ-ନିଷ୍ଠ ହୁଅନ୍ତୁ ! ଜୀବନର ଭିତର ଓ ବାହାର ସମାନ ଭାବରେ ସରସ ସୁନ୍ଦର ହୁଅନ୍ତା । ପିଲାଙ୍କ ଖେଳଣା ମାଟିର କଣ୍ଢେଇଟିଏ, ଆଗକୁ ଯେଉଁ ଚହଟ ଚକ୍‌ଚକ ଦେଖାଯାଏ, ପଛକୁ ସେପରି ଅଖାଡ଼ୁଆ ଅସୁନ୍ଦର ଲାଗେ । ଭିତରଟା କମ୍ଭୁତକିମାକାର, କେବଳ କନା, କାଠି ଓ କୁଟା । ଏପରି ହେଲେ ଜୀବନ

ନ୍ତାଙ୍କ ସୁନ୍ଦର ହେବ ନାହିଁ । ଖେଳଣା ପରି ହେବ ସିନା, ଜୀବନ୍ତ ଜୀବନ ହେବ ନାହିଁ । ବଚନ ସହିତ ହୃଦୟର ସ୍ପନ୍ଦନ ମେଳ ଖାଉଥିବା ଉଚିତ । କାମ, କଥା ଓ ଚିନ୍ତା ମଧ୍ୟରେ ସଙ୍ଗତି ରହିବା ଆବଶ୍ୟକ । ଆମ ବାହ୍ୟ ଆଚରଣରେ ଅମେ ସମ ହୋଇ ଅନ୍ତରାତ୍ମାରେ ଆମେ ଯଦି ସ୍ୱବଶର ଅଭିନୟ କରୁଁ, ତେବେ ଆମ ଜୀବନ-ନାଟକ ଅର୍ଥହୀନ ହୋଇପଡ଼େ । ଦର୍ଶକମାନଙ୍କ ପାଇଁ ଆମର କୌଣସି ନିର୍ଦ୍ଦିଷ୍ଟ ବାର୍ତ୍ତା ନଥାଏ । ସବୁକିଛି ଗୋଟିଏ ନିଷ୍ଫଳ ପ୍ରୟାସ ହୋଇପଡ଼େ । ଜୀବନକୁ ସଫଳ, ସାର୍ଥକ ଓ ସାବଲୀଳ କରିବା ପାଇଁ ଜୀବନରେ ଏକନିଷ୍ଠତା ଆବଶ୍ୟକ ।

ଏହି ସଙ୍ଗତି ଓ ସମନ୍ୱୟର ଅଭାବ ବା ଅସ୍ପଷ୍ଟତା ଆଜି ଆମକୁ ବହୁ ବିପତ୍ତିର ଦ୍ୱାର ଦେଶରେ ଦଣ୍ଡାୟମାନ କରାଇ ଦେଇଛି । ଆମେ ଏକବାରକେ ବହିର୍ମୁଖୀ ହୋଇଯାଉଛୁଁ । ଅନ୍ତର୍ମୁଖିତା ପ୍ରାୟ ବା ପୂରାପୂରି ଅବହେଳିତ ହୋଇଯାଇଛି । ଅଧ୍ୟାତ୍ମବିଦ୍ୟା ଆମର ଗୌରବ ଓ ଗର୍ବ ଧନ । କିନ୍ତୁ ଏହାର ଅର୍ଥ ଆମେ ବୁଝିନାହୁଁ । କେହି କେତେବେଳେ ଏ ବିଷୟରେ କହିବାର ଦେଖାଗଲେ ସେ ମାକ୍ସମ୍ୟୁଲର ବା ଅନ୍ୟ କୌଣସି ବିଦେଶୀ ଅନୁବାଦକଙ୍କ ଭାଷା ଓ ଅଭିବ୍ୟକ୍ତି ଉଦ୍ଧାର କରନ୍ତି । ଏଥିରେ ଚୋପାଏ ହେଲେ ଆତ୍ମୋପଲବ୍ଧି ନଥାଏ । ଆମ ଶିକ୍ଷାୟତନ ସବୁ କିଂକର୍ତ୍ତବ୍ୟବିମୂଢ଼ ହୋଇଥାନ୍ତି । ଅନ୍ୟ ପକ୍ଷରେ ଆମେ ଜଡ଼ବାଦୀ ବିଶ୍ୱରେ ଏପରି ବିହ୍ୱଳିତ ହୋଇଯାଉଁ ଯେ ସ୍ୱଦେଶରେ ବିଦେଶାଗତ ପରି ଜୀବନ ଧାରଣ କରୁଁ । ଆମ ଚେର କେଉଁଠି ରହିଲା ? ଆମ କୂଳକିନାରା କାହିଁ ? ଜୀବନ ତରୀ ପାଇଁ ଥଳ ମିଳିବ କି ? ସେତିକି ନୁହେଁ, ଶରୀରର ମୋହ, ଧନର ପ୍ରଲୋଭନ, ପଦପଦବୀର ମର୍ଯ୍ୟାଦା ଓ କ୍ଷମତାର ନିଶା ଆମକୁ ଏପରି ଗ୍ରାସ କରି ପକାଏ ଯେ ଆମେ ଲଗାମଛଡ଼ା ହୋଇଯାଉଁ । ଦ୍ରୁତଗାମୀ ବସ୍ ନିଜର ଭାରସାମ୍ୟ ସମ୍ଭାଳି ନପାରି ସାମାନ୍ୟ ଧକ୍କାରେ ଛିଟିକି ନୟନ-ଯୋଡ଼ରେ ଯେପରି ପଲଟିମାରି ପଡ଼ିଥାଏ ଆମ ଅବସ୍ଥା ସେପରି ହୋଇଯାଏ । ଆହୁରି ଟିକିଏ ଆଗେଇ ଗଲେ, ଆମକୁ ଲକ୍ଷ୍ୟ କରିବାକୁ ହେବ ଯେ, ସତ୍ଚୋଟପଣିଆ, ସଂଯମ, ସହନଶୀଳତା, ସମ୍ମାନ, ସଂହତି, ସଂଭ୍ରମ ଆଦି ଗୁଣଗୁଡ଼ିକ କୋଇଲିପାଚଡ଼ା ଆମ୍ବ ପରି ଜୀବନବୃକ୍ଷରୁ ଝଡ଼ିପଡ଼େ । ଅପରିଣତ ବୟସରେ ଅକାଳ ବାର୍ଦ୍ଧକ୍ୟ ବ୍ୟାଧିଗ୍ରସ୍ତ ହୋଇ ଶିଶୁଜୀବନ ଯେପରି ଅବସନ୍ନ ହୁଏ, ସମାଜ ସେପରି ମ୍ରିୟମାଣ ଓ ମ୍ଳାନ ହୋଇପଡ଼େ । ସବୁ କିଛି ବିପର୍ଯ୍ୟସ୍ତ ହୋଇଯାଏ । ବ୍ୟବସାୟ, ବାଣିଜ୍ୟ, ଶିକ୍ଷାଦୀକ୍ଷା, କୃଷି, ଶିଳ୍ପ ଆଦି ଯାବତୀୟ କ୍ଷେତ୍ରରେ ଆମ ଉପରଠାଉରିଆ ଚାଲିଚଳନ ନିଷ୍ପତ୍ତି ପରିଣତିର ସମ୍ମୁଖୀନ ହୁଏ । ଏହି ଅନ୍ତଃସାରଶୂନ୍ୟତା ଆଧୁନିକ ଭାଷାରେ ଟାଉଟର ନାମରେ ପରିଚିତ ହୁଏ । ଏହା ପୋଲିସର ବ୍ଲାଙ୍କ ଫାୟାର ପରି ଏକ ଫମ୍ପା ଆବାଜ ହୋଇଯାଏ । ନିଷ୍ଫଳ ଶବ୍ଦ ମାତ୍ର । ପୁଣି ଏହି ମୂଲ୍ୟଗୁଡ଼ିକ ଆମ ସମାଜରେ ବଢ଼ୁନାହିଁ—ଉଧେଇ ପାରୁନାହିଁ ।

ଧର୍ମକ୍ଷେତ୍ରରେ ଏହି ନିଷ୍ଠାର ଅଭାବ ଭୟାବହ ହେଉଅଛି । ଧର୍ମ ହେଉଛି ଜୀବନର ଆଧାର ଓ ଅଧେୟ । ଧର୍ମଠାରୁ ଆଉ କିଛି ବଡ଼ ନାହିଁ। ଆଶ୍ରିତ ପ୍ରାଣୀକୁ ଧର୍ମହିଁ ରକ୍ଷା

କରେ । ଜୀବନ ସ୍ରୋତର ମୂଳ ଉତ୍ସ ହେଉଛି ଧର୍ମ ଓ ଏହି ସ୍ରୋତ ଧର୍ମର ଧାରରେ ଗତିକରେ । ପରମ ସତ୍ତାଙ୍କ ପରିପ୍ରକାଶରେ ଜୀବନର ସୃଷ୍ଟି ଓ ଏହାର ପରିଣତି ହେଉଛି ସେହି ପରମ ସତ୍ତାଙ୍କ ସ୍ୱରୂପରେ । ସୃଷ୍ଟି ଓ ପରିଣତିର ମଧ୍ୟବର୍ତ୍ତୀ ଦୃଶ୍ୟମାନ ତଥା ବ୍ୟକ୍ତ ରୂପଟି ସେହି ପରମ ସତ୍ତାଙ୍କ ନିର୍ଦ୍ଦେଶରେ ଚାଲିବାର କଥା ଓ ସଂସାରରେ ରହି ସାଂସାରିକ ଜଞ୍ଜାଳ ମୁକ୍ତ ରହିବା ଆବଶ୍ୟକ । ଏହି ସମସ୍ତର ପରମ ଓ ଚରମ ସାର୍ଥକତା ହେଉଛି "ସର୍ବ ଭୂତ ହିତେ ରତାଃ" ହୋଇ ରହିବା । ଜୀବନ ଧାରଣ ହେଉଛି ଜୀବନ ପାଇଁ ଓ ଏହି ଜୀବନଟି କେବଳ ନିଜର ନୁହେଁ, ଅଖିଳ ବ୍ରହ୍ମାଣ୍ଡର ମଧ୍ୟ । ବରଂ ବିଶ୍ୱଜୀବନ ପାଇଁ ନିଜ ଜୀବନ ଓ ବିଶ୍ୱଜୀବନ ମାଧ୍ୟମରେ ନିଜ ଜୀବନର ଶ୍ରୀବୃଦ୍ଧି । ଏହା ହିଁ ମାନବିକତା ଓ ସମସ୍ତ ଧର୍ମଧାରାର ଏହା ଏକମାତ୍ର ଧ୍ୟେୟ । ବିଭିନ୍ନ ଧର୍ମଧାରାର ଆଙ୍ଗିକ ବିଭିନ୍ନତା ଥିଲେ ହେଁ ଆତ୍ମିକତା ଦୃଷ୍ଟିରୁ ବିଶ୍ୱର ଧର୍ମଧାରା ଗୁଡ଼ିକ ଅଭିନ୍ନ ଓ ସେହି ଅଭିନ୍ନ ବିଚାରଟି ହେଉଛି ମାନବିକତାର ପରିଚୟ, ପୋଷଣ ଓ ପାଳନ । ଏହାକୁ ମହାତ୍ମାଗାନ୍ଧି ସ୍ୱୀୟ ଜୀବନଚର୍ଯ୍ୟାରେ ପ୍ରକଟ କରିଛନ୍ତି ଯେ ଜନସେବା ହିଁ ଈଶ୍ୱର ସେବା । ଦରିଦ୍ରନାରାୟଣ ନରନାରାୟଣ ଆଦି ଶବ୍ଦର ପ୍ରୟୋଗ କରାଯାଇଛି । "ଜୀବହିଁ ଶିବ"—ଏହାହିଁ ଶ୍ରୀରାମକୃଷ୍ଣଙ୍କ ଅନୁଭୂତିସିଦ୍ଧ ସତ୍ୟ । ଏହି ଅନୁଭୂତିର ନିଚ୍ଛକ ପ୍ରକାଶ ଘଟିଛି ସନ୍ଥକବି ଭୀମଭୋଇଙ୍କ ସରଳ ଭାଷାରେ, "ସକଳ ଭୂତେ ବିଜୟେ କରି, ଜୀବଅଜୀବେ ରହିଅଛ ପୂରି ।" ଜୀବନକୁ ଜଗଜ୍ଜନହିତାୟ ଓ ସର୍ବଜନ ସୁଖାୟ କରିବା ପାଇଁ ବୁଦ୍ଧ, ମହାବୀର, ଯିଶୁ, ମହମ୍ମଦ ପ୍ରମୁଖ ଧର୍ମଗୁରୁଗଣ ଚରମ ପରୀକ୍ଷାର ସମ୍ମୁଖୀନ ହୋଇଛନ୍ତି । ସେଥିପାଇଁ ସେମାନେ ଅସୀମ ତ୍ୟାଗ, ଏକନିଷ୍ଠ ସେବା ଓ ଚରମ ସହନ-ଶୀଳତାର ବାର୍ତ୍ତା ବହନ କରିଛନ୍ତି କେବଳ ଦୃଷ୍ଟାନ୍ତ ପ୍ରଦର୍ଶନ କରି । ଜୀବନଟା ଉତ୍ସର୍ଗୀ-କୃତତାର ପ୍ରତୀକ ହୋଇ ରହିଛି । ଆଚରଣରେ ନିଷ୍ଠା ହେତୁରୁ ଆଚାର୍ଯ୍ୟ ପରମ୍ପରା ଆମ ଦେଶର ଜ୍ୱଳନ୍ତ ଉଦାହରଣ ହୋଇଛି । 'ଧର୍ମଂ ଚର' ହେଉଛି ଧର୍ମୀୟ ଜୀବନର କଷଟି ପଥର । 'କର ସତ୍ୟ ଆଚାର', ତାହା ହେଲେ 'ଛେଦ ହୋଇଯିବ ପାତକ ଭାର' । ଧର୍ମ-ଶାସ୍ତ୍ରର ନାମ କହି ବା ଏହାର ଲେଖାକୁ ମୁଖସ୍ଥ କରି କେହି କେବେ କୌଣସି ଧର୍ମରେ ଧାର୍ମିକ ହୋଇପାରିନାହାନ୍ତି । ଧର୍ମ ବା ଧର୍ମର ବିଚାରକୁ ଜୀବନ ନିଷ୍ଠାରେ ପରିଣତ କରିବା ହେଉଛି ଧାର୍ମିକତାର ଅଭ୍ୟାସ । ସେଥିପାଇଁ ଶ୍ରୀ ଚୈତନ୍ୟ ଚରିତାମୃତରେ ଗୁରୁତ୍ୱ ଦିଆଯାଏ— "ଆପନି ଆଚରି ଧର୍ମ ଅପରେ ଶିଖାଏ ।"

ବସ୍ତୁତଃ ଧର୍ମାଚରିତ ଜୀବନ ଆପେ ଆପେ ପ୍ରସାରିତ ହୁଏ । ସେଥିପାଇଁ ଆତ୍ମସିଦ୍ଧ ମନୀଷୀଙ୍କ ଆଡ଼କୁ ଆକୃଷ୍ଟ ହୁଅନ୍ତି ଜନସମାଜ ଓ ସେଥିରେ ଦୂରତା ଅନ୍ତରାୟ ହୋଇନାହିଁ । ଆଚରଣର ଏହା ସ୍ୱାଭାବିକ ପ୍ରକ୍ରିୟା । କୁହାଯାଏ ଯେ ଆଚାର୍ଯ୍ୟ କେବେ ହେଁ ଶିଷ୍ୟ ଖୋଜି ଆଣନ୍ତି ନାହିଁ । ବରଂ ତାଙ୍କ ଆବିର୍ଭାବ ପୂର୍ବରୁ ଶିଷ୍ୟମାନେ ପ୍ରେରିତ ହୋଇଥାନ୍ତି । ଏହାର ସତ୍ୟତା ବିଭିନ୍ନ ଧର୍ମଧାରାରେ ଦେଖିବାକୁ ମିଳେ । ସାଧୁସନ୍ଥ ପରଂପରାରେ ଏହା ମଧ୍ୟ ପ୍ରମାଣିତ । ଜନସମାଜରେ ଯେମାନେ ନିଜ ଜୀବନକୁ ଏକ ମୁକୁଳା ଗ୍ରନ୍ଥ ଭାବରେ

ରଖିଦିଅନ୍ତି । ଏହାହିଁ ଆମ୍ଭ ଶିକ୍ଷଣର ଜଳନ୍ତ ଉଦାହରଣ । ସେଥିପାଇଁ କୁହାଯାଏ, ଯାହା ନ ଦେଖିବ ଦୂର ନୟନେ, ପରତେ ନଯିବ ଗୁରୁବଚନେ । ଏହାହିଁ ଉଭୟ ଆଧ୍ୟାତ୍ମବିଜ୍ଞାନ ଓ ଜଡ଼ବିଜ୍ଞାନରେ ସତ୍ୟ ପ୍ରମାଣିତ । ସଦ୍‌ଗୁରୁ ସେ ଦୃଷ୍ଟିରୁ ମାତ୍ର ଉଚ୍ଚାରି ଦିଅନ୍ତି । ସୁଶିଷ୍ୟ ମନକୁମନ ଅନୁଭବ କରିଯାଆନ୍ତି । ଏହି ଉକ୍ତିଟିର ପ୍ରୟୋଗ ଭଗବାନ ବୁଦ୍ଧ କରିଛନ୍ତି—“ମୁଁ ଯାହା କରୁଛି ତାହା ହିଁ କର । ମାତ୍ର ମୁଁ ଯାହା କହୁଛି ତାହା କର ନାହିଁ ।” ଏପରି ଗୁରୁଗଣ ବିଶ୍ୱବନ୍ଦନୀୟ ହୋଇଛନ୍ତି । ଭାଷାର ମାଧ୍ୟମ ସେମାନଙ୍କୁ ନିର୍ଦ୍ଦିଷ୍ଟ ଭାଷା ଓ ଅଞ୍ଚଳରେ ସୀମିତ କରି ନାହିଁ । ଶ୍ରୀରାମକୃଷ୍ଣ ଏବେ ଏ ଯୁଗରେ ମଧ୍ୟ ଏହାର ପ୍ରମାଣ କରିଛନ୍ତି । ସେ ଯାହା କହିଛନ୍ତି, ସେ ନିଜେ ତାହା କରିଛନ୍ତି ଓ ସେ ଏପରି କୌଣସି କଥା କହି ନାହାନ୍ତି ଯାହାକୁ ସେ ନିଜେ କରି ନାହାନ୍ତି । ନିଷ୍ପାପ ଜୀବନ ହିଁ ଅନ୍ୟମାନଙ୍କୁ ପାପାଚରଣରୁ ରକ୍ଷା କରନ୍ତି ଓ ସଦାଚରଣର ସୁପଥରେ ଆଗେଇ ନିଅନ୍ତି । ଜୀବନ ସର୍ବତୋଭାବରେ ପୂର୍ଣ୍ଣାର୍ପିତ ହେବା ଉଚିତ । ଯେଉଁଠାରେ “ପାପ ପଙ୍କେ ମନ ବୁଡ଼ି ଅନୁକ୍ଷଣ” ସେଠାରେ “ସଦ୍‌ଜ୍ଞାନ ଗତି” କାହିଁ ? ପୁନଶ୍ଚ କୁହଯାଏ, ଯସ୍ତୁ କ୍ରିୟାବାନ୍ ପୁରୁଷଃ ସ ବିଦ୍ୱାନ୍ । ଏହା ଉଭୟ ପରା ବିଦ୍ୟା ଓ ଅପରା ବିଦ୍ୟାରେ ପ୍ରତିପାଦିତ । ଅନେକ ବିଚାରବନ୍ତ ପ୍ରାଣୀ ଅଛନ୍ତି; କିନ୍ତୁ ବିଚାର ସହିତ ଆଚାର ନଥିଲେ ଏହା ଜନସାଧାରଣଙ୍କ ଉପକାର କରେ କି ? ବିଚାର ଓ ଆଚାରର ସମନ୍ୱୟକୁ ସତ୍ୟ କୁହାଯାଇ ପାରେ । ମହାତ୍ମା-ଗାନ୍ଧିଙ୍କର ସକଳ ସାଧନାର ଧ୍ୟେୟ ଥିଲା ଏହି ସମନ୍ୱୟ । ଥରେ କୌଣସି ସମ୍ବାଦପତ୍ରରେ ବାର୍ତ୍ତା ଦେବାକୁ ଯାଇ ସେ କହିଥିଲେ, “ମୋର ଜୀବନ ହିଁ ମୋର ବାର୍ତ୍ତା ।” କାୟ-ମନୋବାକ୍ୟରେ ତଥା ଭିତର ବାହାର ଦୃଷ୍ଟିରୁ ପ୍ରତ୍ୟେକ ମନୁଷ୍ୟ ଏକୀଭୂତ ହେବା ଉଚିତ । ଏହି ଏକୀଭୂତତାର ଅଭାବରୁ ବ୍ୟକ୍ତି ଓ ସମାଜର ଜୀବନରେ ବିଡ଼ମ୍ବନା ଓ ବିଫଳତା ଆସିଥାଏ । ବ୍ୟକ୍ତିତ୍ୱର ବିରୋଧାତ୍ମକ ବିଭାଜନ ସୃଷ୍ଟି ହେଉଛି । ଏହି କଂସ-କଂସାର ବ୍ୟକ୍ତିତ୍ୱ ଯୋଗୁଁ ସେ ସମାଜ ସହିତ ସୁସ୍ଥ ସମ୍ପର୍କ ରଖି ପାରୁନାହିଁ । ସମାଜରେ କେବଳ ପାଗଳର ପ୍ରଳାପ ଶୁଭୁଛି । କିମ୍ବା ଅନେକ ସମୟରେ କୁହାଳିଆମି ଏତେ ବଢ଼ିଯାଉଛି ଯେ ସବୁ କିଛି ଧୂଆଁଳିଆ ହୋଇଯାଉଛି । ସ୍ଥିର ଚିତ୍ତରେ ଧୀର ଚିନ୍ତା କରିବାକୁ ପଡ଼ିବ । ସ୍ୱାମୀ ବିବେକାନନ୍ଦଙ୍କର ବିଶ୍ୱବାସୀଙ୍କ ପ୍ରତି ଆହ୍ୱାନ ହେଉଛି, Be and Make—ଭଲ ହୋଇ ଅନ୍ୟମାନଙ୍କୁ ଭଲ କର । ନିଜେ ନହୋଇ ଅନ୍ୟକୁ ତିଆରି କରିବା କିପରି ? ସ୍ୱାମୀ ଶିବାନନ୍ଦ ଠିକ୍ ସେହି ମର୍ମରେ ଆହ୍ୱାନ ଦିଅନ୍ତି, Be good and Do good । ଭଲ ହେଲେ ସିନା ଅନ୍ୟର ମଙ୍ଗଳ କରିବା !

ନିଜ ଭିତରେ ସକଳ ସୃଷ୍ଟିକୁ ପ୍ରତିଫଳିତ କରିନପାରି ସମଦୃଷ୍ଟି, ସହନଶୀଳତା ଓ ଭ୍ରାତୃତ୍ୱ ଏକ ଛଳନାରେ ପରିଣତ ହେଉଛି । ବିଜ୍ଞାନର ଅଭୂତପୂର୍ବ ଅଗ୍ରଗତି ମାନସିକ ଓ ଭୌତିକ ଦୂରତାକୁ ଦୂର କରିଦେଇଛି । ସମ୍ବାଦପତ୍ର, ରେଡ଼ିଓ, ଟେଲିଭିଜନ ଆଦି ଗଣ-ମାଧ୍ୟମ ଆଜି ଦୂରକୁ ନିକଟ କରିଛି, ଅଭାବ ସହିତ ଭାବ ସୃଷ୍ଟି କରିଛି ଓ ଅଜଣାକୁ ଜଣାଇ ଦେଇଛି । କିନ୍ତୁ ଏହା ସତ୍ତ୍ୱେ ଆମ ହୃଦୟର ସ୍ୱଚ୍ଛତା ଓ ଆଚରଣର ଶୁଦ୍ଧତା ଅଭାବରୁ ଆମେ

ବିପରୀତମୁଖୀ ହୋଇଯାଉଛନ୍ତି । ଏହା ଫଳରେ ଆମ ବ୍ୟକ୍ତିତ୍ୱରେ ଆସିଛି ଅଭୂତ ଅସାମଞ୍ଜସ୍ୟ ଓ ଆଚରଣ ଅନିଶ୍ଚିତ ହୋଇଯାଉଛି । ବ୍ୟକ୍ତିର ଭାଷା ଆଚରଣ ସମ୍ପୂର୍ଣ୍ଣଭାବରେ ଅକଥ୍ୟ ଓ ଅବର୍ଣ୍ଣ୍ୟ ହୋଇଛି । ଆଧୁନିକ ସମାଜବିଜ୍ଞାନୀମାନେ ପାଶ୍ଚାତ୍ୟ ବିଚାରଧାରା ଅନୁସରଣ କରି ବ୍ୟକ୍ତିତ୍ୱର ଏହି ଅନାଗତ ଅନିଶ୍ଚିତତାକୁ ତାର ସମ୍ଭାବନାର ଉତ୍ସ ଭାବରେ ଦେଖିଛନ୍ତି । ପରନ୍ତୁ ପ୍ରାଚ୍ୟ ଚିନ୍ତାଧାରାଦ୍ୱାରା ବ୍ୟକ୍ତି ଓ ସମାଜକୁ ସଙ୍ଗଠିତ, ସମନ୍ୱିତ ଓ ସୁସଂହତ କରିବା ପାଇଁ ସକଳ ଆୟାସ, ଉପାସନା ଓ ଅଭ୍ୟାସ ସୃଷ୍ଟି କରାଯାଇଛି । ନିଷ୍କପଟ, ସ୍ୱଚ୍ଛ, ସୁସ୍ଥ ଓ ସରଳ ହୃଦୟହିଁ ସକଳ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ କରିଦିଏ । ଦେବଭୂମିର ନବଦିଗନ୍ତ ମାନବ ହୃଦୟରେ ବିକାଶ ଲାଭ କରେ । ଧର୍ମ, କର୍ମ, ଶିକ୍ଷା, ଦୀକ୍ଷା ଆଦି ସକଳ ବିଭାବରେ ମନୁଷ୍ୟ ଦିବ୍ୟ ସନ୍ଧାନର ପଥରେ ଅଗ୍ରସର କରେ । ନୈଷଧ କାବ୍ୟର ସୂଚନା ଏଠାରେ ସ୍ମରଣୀୟ, "ଅଧୀତି ବୋଧ ଆଚରଣ ପ୍ରଚାରଣୈଃ ।" ପଠିତ ସାମଗ୍ରୀକୁ ହୃଦୟଙ୍ଗମ କରିବାକୁ ପଡ଼ିବ । ଅବବୋଧ ଫଳରେ ଆଚରଣ ଅନୁରୂପ ହେବ । ଏତକ ହୋଇଗଲେ ପାଠ ଲାଭ କରିଥିବା ବ୍ୟକ୍ତି ପାଠର ପ୍ରଚାର କରିପାରିବେ । ପାଠର ଅବବୋଧ ଓ ଉନ୍ନତ ଆଚରଣ ନଥାଉ, ବିଜୟ ବାନାକନା ଓ ବେଶଭୂଷା ଧରି ଆମେ ପ୍ରଚାର ଉଦ୍ଦେଶ୍ୟରେ ଅଭିଯାନ ଆରମ୍ଭ କରୁଛୁଁ । ଆମ ଧର୍ମ ଓ ଶିକ୍ଷା କେବଳ ସମ୍ପ୍ରଦାୟରେ ସୀମିତ ହେଉଛି । ଧର୍ମଶିକ୍ଷା ହୋଇପାରୁନାହିଁ ଓ ଶିକ୍ଷା ସଙ୍କାୟ ଧର୍ମାଚରଣ ରଖିପାରୁ ନାହିଁ । ଯେକୌଣସି ଉପାୟରେ ଖଣ୍ଡେ ଚାକିରି ଯୋଗାଇ ଦେବାର ଜ୍ଞାନ ସାଧନାରେ ଶିକ୍ଷା ପରିଣତ ହୋଇଛି । ସେଠି ସାବିଦ୍ୟା ଯା ବିମୁକ୍ତୟେ କାହୁଁ ? ଠିକ୍ ସେହିପରି ଭାବରେ ଧର୍ମାଚରଣ ହିଁ କାମନା ଓ ବାସନା ସିଦ୍ଧିର ମାର୍ଗ ହୋଇଛି । ସେଠି ଭୂମାନନ୍ଦ କାହିଁ ? "କ୍ଷୟା ତଦକ୍ଷରଂ ଅଧୀ-ଗମ୍ୟତେ" ହେଉଛି କି ? ନିଷ୍କାମ ଧର୍ମ ଓ କର୍ମର ସାଧନା ଚାଲିଛି କି ?

ଧର୍ମ-ଶିକ୍ଷାରେ ଗୁରୁଙ୍କୁ ଆମେ ଆପଣାକୁ ଅର୍ପଣ କରୁଛୁଁ କେବଳ ଆମ ସ୍ୱାର୍ଥସିଦ୍ଧି ପାଇଁ କିମ୍ବା ଆମ ଅଧର୍ମିକାର ପ୍ରସାର ଭାବରେ । କିନ୍ତୁ ଆମେ ସେ ଆଦର୍ଶକୁ ଗ୍ରହଣ କରୁଛୁଁ କି ? ଆମକୁ ଶିକ୍ଷା ଦେବାରେ ଗୁରୁ ମଧ୍ୟ ସର୍ବତୋଭାବରେ ଏକମନା ହୋଇଥା'ନ୍ତି କି ? ଶିକ୍ଷାର ବିଷୟ ଓ ବାର୍ତ୍ତା ଶିକ୍ଷକଙ୍କ ଆଚରଣଭୁକ୍ତ ହୋଇଥାଏ କି ? ଅନେକ ସମୟରେ କେବଳ ସୂଚନା ଓ ସମ୍ବାଦ (information) ଉପସ୍ଥାପନ କରାଯାଏ । ଏସବୁ ସେପରିଭାବରେ ଶିକ୍ଷାର୍ଥୀମାନେ ଗ୍ରହଣ କରିଥାନ୍ତି । ଏସବୁର ମର୍ମ ଓ ମର୍ମାନ୍ତିକ ଆଦର୍ଶ ଶିକ୍ଷକ ତଥା ଶିକ୍ଷାର୍ଥୀଙ୍କ ଅଗୋଚର ହୋଇ ରହିଯାଏ । ଏହା ଫଳରେ ଆମ ପାଠ, ପରଚ୍ଚା ଓ ପଟୁଆରର ଲୋକ-ଦେଖାଣିଆ ଅଭିନୟ ହୁଏ । ତେଣୁ ଧର୍ମ, ଶିକ୍ଷା, ସମାଜରଚନା ଆଦି ମାନବ ଧର୍ମୀ କାର୍ଯ୍ୟକ୍ରମ-ଗୁଡ଼ିକ କେବଳ କାଳକ୍ଷେପଣ ପାଇଁ ବାହାନା ହୋଇ ରହେ । ଧର୍ମବାଦୀହିଁ ସେ ଯେ ଆପେ ଆଚରନିଷ୍ଠ ହୋଇ ଅନ୍ୟମାନଙ୍କ ମଧ୍ୟରେ ପରିବର୍ତ୍ତନର ପ୍ରେରଣା ସୃଷ୍ଟି କରିଛନ୍ତି ।

---

# ଶିକ୍ଷଣସମାଜ ଓ ଶିକ୍ଷକ

୧୯୬୬ ମସିହାରେ ଶିକ୍ଷା କମିଶନ ବା କୋଠାରି କମିଶନଙ୍କ ରିପୋର୍ଟ ପ୍ରକାଶ-ପାଇଛି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ତତ୍କାଳୀନ ସଭାପତି ଡକ୍ଟର ଡି. ଏସ୍. କୋଠାରି ଏହି ଶିକ୍ଷା ଆୟୋଗଙ୍କ ଅଧ୍ୟକ୍ଷତା କରିଥିବାରୁ ଏହା ସାଧାରଣତଃ କୋଠାରି କମିଶନ୍ ନାମରେ ଅଭିହିତ । ଏହି ରିପୋର୍ଟର ଶିରୋନାମା ହେଉଛି—'ଶିକ୍ଷା ଓ ଜାତୀୟ ବିକାଶ' । ସମଗ୍ର ବିଶ୍ୱ କ୍ରମେ ଅଧିକରୁ ଅଧିକ ବିଜ୍ଞାନ ଆଧାରିତ ହେଉଥିବାରୁ ଯେକୌଣସି ଦେଶର ସମଗ୍ର ବିକାଶ ପ୍ରକ୍ରିୟା ଓ ଏହାର କଲ୍ୟାଣ, ପ୍ରଗତି ତଥା ସୁରକ୍ଷା ପାଇଁ ଶିକ୍ଷା ଓ ଗବେଷଣା ଏକାନ୍ତ ଆବଶ୍ୟକ । ତେଣୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିବର୍ତ୍ତନର ଏକ ଶକ୍ତିଶାଳୀ ଆୟୁଧରୂପେ ଶିକ୍ଷାକୁ ବ୍ୟବହାର କରିବାକୁ ପଡ଼ିବ । ସେହି କାରଣରୁ ଆମର ଜାତୀୟ ଆକାଂକ୍ଷା ଆମ ଦେଶରେ ଚାଲୁଥିବା ଜାତୀୟ ବିକାଶମୂଳକ କାର୍ଯ୍ୟକ୍ରମ ଏବଂ ତତ୍ସଜନିତ ସମସ୍ୟାଗୁଡ଼ିକ ସହିତ ଶିକ୍ଷାକୁ ସମ୍ପର୍କିତ କରାଯିବ ।

ଏହି ସୁପାରିଶକୁ ହୃଦୟଙ୍ଗମ କରି ଶିକ୍ଷାନୁଷ୍ଠାନ ଓ ଶିକ୍ଷକଙ୍କ ଭୂମିକା ନିର୍ଣ୍ଣୟ କରାଗଲା-ବେଳେ ସମାଜ ଓ ଶିକ୍ଷା ଅଭିନ୍ନ ହୋଇଯାଏ । ଏମାନଙ୍କ ମଧ୍ୟରେ ବ୍ୟବଧାନ ବସ୍ତୁତଃ ଲୋପେଇଯାଏ । ଶିକ୍ଷା କେବଳ ସମାଜ ଅଭିମୁଖୀ ହୁଏ ନାହିଁ—ଏହା ସମାଜର ଅଙ୍ଗ ହୁଏ । ଏଥିରେ ସମାଜର ସମସ୍ୟା ସମାଧାନ କରିବା ପାଇଁ ଶିକ୍ଷାର୍ଥୀମାନେ କଳା କୌଶଳ, ଜ୍ଞାନ, ପ୍ରେରଣା ଓ ସାମର୍ଥ୍ୟ ଅର୍ଜନ କରନ୍ତି । ସଂକ୍ଷେପରେ ଏହା ହେଲା ଗୋଟିଏ ଦିଗର କଥା । ଅନ୍ୟ ଦିଗରୁ ଦେଖିବାକୁ ଗଲେ ସମାଜ ହିଁ ଶିକ୍ଷାର ଭୂମିକା ଗ୍ରହଣ କରେ । ଏହାର ପ୍ରକ୍ରିୟା-ଗୁଡ଼ିକ ଶିକ୍ଷାନୁକୂଳ ହୁଏ । ଶିଳ୍ପ, କୃଷି, ପରିବହନ, ସ୍ୱାସ୍ଥ୍ୟ, ଗୋପାଳନ ଆଦି ଏହାର ବିକାଶମୂଳକ ବିଭାଗଗୁଡ଼ିକ ଶିକ୍ଷାନୁଷ୍ଠାନ ପରି ଶିକ୍ଷାର ଭୂମିକା ଗ୍ରହଣ କରେ । ତଦ୍ଦ୍ୱାରା ଓ ଶିକ୍ଷାନୁଷ୍ଠାନ ସହାୟକ କାର୍ଯ୍ୟକଳାପଦ୍ୱାରା ଶିକ୍ଷାନୁକୂଳ ପରିବେଶ ସୃଷ୍ଟି କରାଯାଏ । ଏପରି ସ୍ଥଳେ ଶିକ୍ଷକ ସମାଜ ଗଢ଼ିଉଠେ । ସମାଜର ଅଭିବୃଦ୍ଧି ହିଁ ଶିକ୍ଷାର ଉଦ୍ଦେଶ୍ୟ ହୁଏ ଓ ଶିକ୍ଷାର ଉଦ୍ଦେଶ୍ୟାବଳୀର ସମ୍ପୂର୍ଣ୍ଣ ରୂପାୟନରେ ସମାଜର ସହଯୋଗିତା ରହେ ।

ଏହି ପ୍ରସଙ୍ଗରେ ଏହା ସ୍ମରଣ କରିବାର କଥା ଯେ ସମାଜ ଓ ଶିକ୍ଷାନୁଷ୍ଠାନ ମଧ୍ୟରେ ବଢ଼ିଉଠୁଥିବା ଅହେତୁକ ବ୍ୟବଧାନକୁ କ୍ରମେ କମାଇଦେଇ ଉଭୟ ମଧ୍ୟରେ ସ୍ୱାଭାବିକ ନିକଟ ସମ୍ପର୍କ ସ୍ଥାପନ କରିବା ପାଇଁ ଗମ୍ଭୀର ଚିନ୍ତା ପ୍ରକାଶ ପାଇଛି । ସମାଜତତ୍ତ୍ୱରେ ଏକ ନୂତନ ଦିଗନ୍ତ ଫିଟିଛି । ଶିକ୍ଷା-ସମାଜତତ୍ତ୍ୱ ନାମରେ ଏକ ବିଭାବର ଅଧ୍ୟୟନ କରାଯାଉଛି ।

ଉଭୟ ଶିକ୍ଷକ ଓ ଶିକ୍ଷାର୍ଥୀ ହେଉଛନ୍ତି ସାମାଜିକ। ଏଥି ସଙ୍ଗେ ସଙ୍ଗେ ସମଗ୍ର ଶିକ୍ଷା ହେଉଛି ଏକ ସାମାଜିକ ଓ ମାନବିକ ପ୍ରକ୍ରିୟା। ତେଣୁ ଶିକ୍ଷାକୁ ବାସ୍ତବ କରିବା ପାଇଁ ଓ ଏହାର ଉଦ୍ଦେଶ୍ୟକୁ ସଫଳ କରିବା ପାଇଁ ଶିକ୍ଷାନୁଷ୍ଠାନକୁ ସମାଜଠାରୁ ବିଚ୍ଛିନ୍ନ ରଖି ପାଠପଢ଼ାର ଦ୍ୱୀପରେ ପରିଣତ କରିବାକୁ ଦିଆଯିବ ନାହିଁ। କିମ୍ବା ଏକ ପକ୍ଷରେ ସମାଜ ପ୍ରତି ଶିକ୍ଷାନୁଷ୍ଠାନ ଓ ପକ୍ଷାନ୍ତରରେ ଶିକ୍ଷାନୁଷ୍ଠାନ ତଥା ଶିକ୍ଷାର୍ଥୀଙ୍କ ପ୍ରତି ସମାଜ ମାମୁଲି କିମ୍ବା ଲୋକଦେଖାଣିଆ କର୍ତ୍ତବ୍ୟ କରିଦେଲେ ଚଳିବ ନାହିଁ। ଏହା ଯାଇତାଇ କାର୍ଯ୍ୟକ୍ରମର କଥା ନୁହେଁ। ଶିକ୍ଷା ଓ ସମାଜ ନିବିଡ଼ ଭାବରେ ଜଡ଼ିତ ହୋଇ ଶିକ୍ଷା ସମୃଦ୍ଧ ହେବ ଓ ସମାଜର ବିକାଶ ଦିଗରେ ଆଗେଇଯାଇ କ୍ରମେ କ୍ରମେ ଶିକ୍ଷଣ ସମାଜରେ ପରିଣତ ହେବ।

ଏହି ଚିନ୍ତାଧାରାର ରୂପାୟନ ଘଟିଛି ଶିକ୍ଷା ବିକାଶ ଶୀର୍ଷକ ଆନ୍ତର୍ଜାତିକ ଶିକ୍ଷା ଆୟୋଗଙ୍କ ବିବରଣୀରେ। ଏହା ୧୯୭୨ ମସିହା ମଇ ମାସ ୧୮ ତାରିଖରେ ଦାଖଲ କରା-ଯାଇଛି। ଏହି ଆୟୋଗଙ୍କ ଅଧ୍ୟକ୍ଷତା କରିଛନ୍ତି ଫ୍ରାନ୍ସ ଦେଶର ପୂର୍ବତନ ଶିକ୍ଷାମନ୍ତ୍ରୀ ଏଡ଼ଗାର ଫରେରେ। ଏହି ଶିକ୍ଷା ଆୟୋଗ ପ୍ରତିଷ୍ଠା କରିଥିଲେ ଇଉନେସ୍କୋ। ଏହି ବିବରଣୀର ଶିରୋନାମା ହେଉଛି ଲର୍ଣ୍ଣିଂ ଟୁ ବି ଦ ଓ୍ୱାଲଡ଼ ଅଫ୍ ଏଡ଼ୁକେସନ ଟୁଡ଼େ ଏଣ୍ଡ ଟୁମୋରୋ। ସେଥିରେ ଘୋଷଣା କରାଯାଇଛି ଯେ ଆଜି ଓ ଆସନ୍ତା କାଲିର ଏକମାତ୍ର ଆବଶ୍ୟକତା ସମଗ୍ର ବିଶ୍ୱ ପାଇଁ ଏକ ଶିକ୍ଷଣ ସମାଜ ପ୍ରତିଷ୍ଠାର ଆଭିମୁଖ୍ୟକୁ ରୂପାୟନ କରିବା।

ଏହି ଭାବନାକୁ ପରିପୁଷ୍ଟ କରିବା ପାଇଁ ସେମାନେ ବ୍ୟାଖ୍ୟା କରନ୍ତି, କେତେକ ପୂର୍ବ ନିର୍ଦ୍ଧାରିତ ବ୍ୟବସ୍ଥା, ଆବଶ୍ୟକତା ଓ ଭାବନା ଅନୁଯାୟୀ ଆଗାମୀ କାଲିର ସମାଜ ପାଇଁ ନେତୃବର୍ଗକୁ ତାଲିମ ଦେବା କାମରେ ଶିକ୍ଷାକୁ ସୀମିତ କରିଦେବା ଅତୀତରେ ଯେପରି ଆଜି ମଧ୍ୟ ସେପରି ଅପ୍ରାସଙ୍ଗିକ ହୋଇଅଛି। ଠିକ୍ ସେହିପରି କୌଣସିପ୍ରକାର ନିର୍ଦ୍ଦିଷ୍ଟ ବ୍ୟବସ୍ଥା ପାଇଁ ସ୍ଥାୟୀ ଭାବରେ ଯୁବଗୋଷ୍ଠୀଙ୍କୁ ପ୍ରସ୍ତୁତ କରିବା ଯେ ଶିକ୍ଷାକାର୍ଯ୍ୟ ହୋଇପାରେ ଏହା ମଧ୍ୟ ଅପ୍ରାସଙ୍ଗିକ। ଶିକ୍ଷା ଏକ ସମ୍ଭ୍ରାନ୍ତ ଶ୍ରେଣୀପାଇଁ ଉଦ୍ଦିଷ୍ଟ ନୁହେଁ। ଏହା ମଧ୍ୟ ଏକ ନିର୍ଦ୍ଦିଷ୍ଟ ଯୁଗର ସହଗାମୀ ହୋଇନପାରେ। ସମଗ୍ର ମାନବ ସମାଜ ତଥା ବ୍ୟକ୍ତି-ବିଶେଷଙ୍କର ସମଗ୍ର ଜୀବନକୁ ଆଧାରିତ କରିବାରେ ଶିକ୍ଷାର ଭୂମିକା ଅଧିକରୁ ଅଧିକ ସୁଦୂରପ୍ରସାରୀ ହେଉଅଛି।

ଅତଏବ ଏଥିରୁ ଶିକ୍ଷକଙ୍କର ଭୂମିକା ସମ୍ପର୍କରେ କେତେକ ନିର୍ଦ୍ଦିଷ୍ଟ ସୂଚନା ସୁସ୍ପଷ୍ଟ ହୁଏ—

(୧) ଶିକ୍ଷା ସମ୍ବନ୍ଧରେ ଶିକ୍ଷକଙ୍କ ମନରେ ଏକ ଧରାବନ୍ଧା ରୂପରେଖ ବା ଛାଞ୍ଚ ରହିବ ନାହିଁ। ସମାଜ ସର୍ବଦା ପରିବର୍ତ୍ତନଶୀଳ। ଏହା ଆଜି ଦ୍ରୁତତର ହେଉଅଛି। ତେଣୁ ଶିକ୍ଷାର ପାଠ୍ୟକ୍ରମ, ପଦ୍ଧତି, ମୂଲ୍ୟାୟନ ଆଦି ନିରନ୍ତର ସମୟୋପଯୋଗୀ ହେଉଥିବ। ଗାନ୍ଧିଜୀଙ୍କ ଭାଷାରେ ଏହାହିଁ ହେବ ସମଗ୍ର ଶିକ୍ଷାର ନିତ୍ୟନୂତନତା।

(୨) ଶିକ୍ଷାର ଉପଯୋଗିତା ଶିକ୍ଷଣ ସମାଜରେ କ୍ରମେ ଓ ଅତ୍ୟନ୍ତ ଅଧିକରୁ ଅଧିକ ଉପଲବ୍ଧି କରାଯାଉଛି । ତେଣୁ ଜ୍ଞାନର ବୃଦ୍ଧି ଘଟୁଛି ଓ ଜ୍ଞାନର ବିସ୍ଫୋରଣ ହେଉଅଛି । ଏହା ବ୍ୟତୀତ ଶିକ୍ଷା ସମସ୍ତଙ୍କ ପାଇଁ ଜୀବନବ୍ୟାପୀ ଆବଶ୍ୟକତାରେ ପରିଣତ ହୋଇଅଛି । ଏହା ଫଳରେ ଶିକ୍ଷକଙ୍କ ପକ୍ଷରେ ଆଜି ଅଧ୍ୟାପନା ପଦ୍ଧତି ବିଷୟରେ ଅଧିକ ଜାଣିବା ଓ ଏହା ଉପରେ ଗୁରୁତ୍ୱ ଦେବା ଅନୁଚିତ । ଶିକ୍ଷାର୍ଥୀ କିପରି ଅଧ୍ୟୟନ କରିବେ ଏହି ତତ୍ତ୍ୱ ଓ ପ୍ରଣାଳୀ ଶିକ୍ଷକ ଜାଣି ତଦନୁଯାରେ ସେମାନଙ୍କୁ ଉତ୍ସାହିତ କରି ଅଭିପ୍ରେରଣା ଦେବା ଉଚିତ । ଆମେ ବିଦ୍ୟାଦାତା ଓ ଶିକ୍ଷାର୍ଥୀ ବିଦ୍ୟାଗ୍ରହୀତା ଏହି ମନୋଭାବ ପରିହାର କରି ବିଦ୍ୟାର୍ଥୀ ସ୍ୱୟଂ ଜ୍ଞାନକୁ ନିଜର କରି ଜ୍ଞାନର ସର୍ବୋଚ୍ଚ କର୍ତ୍ତା ହେବେ, ଏଥିପାଇଁ ସେମାନଙ୍କୁ ପ୍ରେରଣା ଓ ସୁଯୋଗ ଦିଆଯିବ । ଏହି ବିଚାରଧାରାର ମୂଳ ଧ୍ୱନି ଟିକିଏ ଭିନ୍ନ ଦୃଷ୍ଟିରେ ଆମ ବେଦ-ବେଦାନ୍ତରେ ଦେଖିବାକୁ ମିଳେ, ଆତ୍ମୋପଲବ୍ଧି ଓ ଆତ୍ମଶିକ୍ଷା । ୧୯୪୮ ମସିହାରେ ବିଶ୍ୱ-ବିଦ୍ୟାଳୟ ଶିକ୍ଷା ଆୟୋଗଙ୍କ ଅଧ୍ୟକ୍ଷ ପ୍ରାଚ୍ୟ ବିଦ୍ୟା ବିସ୍ତର ଦାର୍ଶନିକ ଓ ରାଷ୍ଟ୍ରନୀତିଜ୍ଞ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ ବିଶ୍ୱବିଦ୍ୟାଳୟ ଶିକ୍ଷାର ଆଭିମୁଖ୍ୟ ସମ୍ବନ୍ଧୀୟ ସ୍ୱକୀୟ ଦୃଷ୍ଟିଭଙ୍ଗୀ ଉପସ୍ଥାପନ କରି କହନ୍ତି, ଶିକ୍ଷାର୍ଥୀ ଆତ୍ମବିତ୍ ହେବେ; ସେ ମନ୍ତ୍ରବିତ୍ ବା ଶାସ୍ତ୍ରବିତ୍ ନୁହନ୍ତି । ଶାସ୍ତ୍ରକୁ ତାଙ୍କ ଉପରେ ଲଦିଦେଇ ଶିକ୍ଷାର୍ଥୀଙ୍କୁ ଶାସ୍ତି କରାଯିବ ନାହିଁ । ଏହା ତାଙ୍କଠାରୁ ଆରମ୍ଭ କରାଯିବ । ଜ୍ଞାନର ଅଧ୍ୟାପନା ପ୍ରଣାଳୀକୁ ଗୁରୁତ୍ୱ ଦୂଆଇଦେଇ ଜ୍ଞାନର ଅନୁସନ୍ଧାନ ଓ ଅନ୍ୱେଷଣ ଉପରେ ଦୃଷ୍ଟି ରହିବ ।

(୩) ଶିକ୍ଷାର୍ଥୀଙ୍କର ସ୍ୱାଧ୍ୟାୟ ଉପରେ ମନୋନିବେଶ ଯେପରି ରହେ, ଶିକ୍ଷକ ସେଥିପ୍ରତି ଦୃଷ୍ଟି ଦେବେ ଓ ଆବଶ୍ୟକ ବ୍ୟବସ୍ଥା କରିବେ । ସେ ଦୃଷ୍ଟିରୁ ଶିକ୍ଷାୟତନ ଓ ଶିକ୍ଷକ ଶିକ୍ଷାର୍ଥୀଙ୍କ ପାଇଁ ଜ୍ଞାନଲାଭର ଏକମାତ୍ର ଉତ୍ସ ହୋଇ ରହିବେନାହିଁ । ଅର୍ଥାତ୍ ବିଦ୍ୟାଳୟ ବହିର୍ଭୂତ ଅଭିଜ୍ଞତା ଶିକ୍ଷାପରିସରଭୁକ୍ତ କରିବାକୁ ପଡ଼ିବ । ସାଧାରଣ ଶାସନ, ଶିଳ୍ପ, କୃଷି, ପରିବହନ, ସ୍ୱାସ୍ଥ୍ୟ, ବାଣିଜ୍ୟ ବ୍ୟବସାୟ ଆଦି ଶିକ୍ଷାର ବିକାଶ ଓ ପ୍ରସାରରେ ଅଂଶ ଗ୍ରହଣ କରିବା ଦରକାର । ଜାତୀୟ ତଥା ସ୍ଥାନୀୟ ସରକାରୀ ଓ ବେସରକାରୀ ସଂସ୍ଥା ଶିକ୍ଷାପ୍ରଦ ଅନୁଷ୍ଠାନ ହୋଇ ରହିବେ । ଶିକ୍ଷକ ଏସବୁ ସହିତ ସହଯୋଗ ରଖି ଶିକ୍ଷାକୁ ସମୃଦ୍ଧ ଓ ଫଳପ୍ରଦ କରିବେ ।

ଶିକ୍ଷକ ମଧ୍ୟ ନିଜେ ସ୍ୱାଧ୍ୟାୟବ୍ରତୀ ହୋଇ ରହିବେ । ଜ୍ଞାନର ବିସ୍ଫୋରଣ ସହିତ ନିଜକୁ ଜଡ଼ିତ ରଖିବେ ।

(୪) ଶିକ୍ଷଣ ସମାଜ ତାର ସ୍ୱକୀୟ ପରମ୍ପରା ଓ ପ୍ରଥାର କ୍ରମରେ ବିକାଶପଥରେ ଅଗ୍ରସର କରୁଥାଏ ଓ ନିରନ୍ତର ପରିବର୍ତ୍ତିତ ହେଉଥାଏ । ବିଦ୍ୟାୟତନ ଯେତେ ବିଶାଳ ହେଉ ପଛକେ ସେ ପ୍ରକାର କେବଳ ଗୋଟିଏ ମାତ୍ର ଅନୁଷ୍ଠାନ ଦ୍ୱାରା ସମାଜ ଏହାର ସମସ୍ତ ଅଙ୍ଗ ଓ ପ୍ରତିଷ୍ଠାକୁ ଫଳପ୍ରଦ ଭାବରେ ପ୍ରଭାବିତ କରିପାରିବ ନାହିଁ । ତେଣୁ ସମଗ୍ର ସମାଜରେ ସମସ୍ତ ବିଭାଗକୁ ଶିକ୍ଷାକାର୍ଯ୍ୟ ସମ୍ପ୍ରସାରିତ ହେବା ସଙ୍ଗେ ସଙ୍ଗେ ବିଦ୍ୟାୟତନର ସଂଖ୍ୟା ଓ ଗୁଣ ବୃଦ୍ଧି କରାଯାଉଥିବ । ଶିକ୍ଷକ ଶିକ୍ଷା ମଧ୍ୟ ନିରବଚ୍ଛିନ୍ନ ହୋଇ ଚାଲିବ ।

(୫) ଶିକ୍ଷଣ ସମାଜ ନିଶ୍ଚିତ ଭାବରେ ଆଧୁନିକ ହେବ । ଏହା ସମୃଦ୍ଧ ହେବ । ଏହି ଆଧୁନିକୀକରଣ ଓ ସମୃଦ୍ଧିର ଭିତ୍ତି ସାଂସ୍କୃତିକ ମୂଲ୍ୟବୋଧ ତଥା ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ ହେବ । ଗାନ୍ଧି, ନେହେରୁ, ରାଧାକୃଷ୍ଣନ ପ୍ରଭୃତି ମନୀଷୀଗଣ ମାନବ ଜୀବନର ପ୍ରାଧାନ୍ୟ ଓ ମହନୀୟତା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି । ଶିକ୍ଷଣ ସମାଜର ଶିକ୍ଷା, ଶିକ୍ଷାନୁଷ୍ଠାନ ଓ ଶିକ୍ଷକ ନିଶ୍ଚିତ ଭାବରେ ଆମ ଦେଶର ଆଧ୍ୟାତ୍ମିକ, ନୈତିକ ଓ ସାଂସ୍କୃତିକ ମୂଲ୍ୟବୋଧ ପ୍ରତି ସମୁଚିତ ଧ୍ୟାନ ଦେବେ ।

---

# ସମାଜ ଓ ସଂହତି

ସଂହତି ବିନା ସମାଜର ସ୍ଥିତି, ସ୍ଥାୟିତ୍ୱ ଓ ଅଗ୍ରଗତି ସମ୍ଭବ ନୁହେଁ । ଏହା ଭୂୟଷ୍ପୂର୍ତ୍ତ ପଡ଼୍ରିବ । ଇତିହାସର ପୃଷ୍ଠା ଏ ବିଷୟରେ ଦୃଷ୍ଟାନ୍ତ-ବହୁଳ । ବିଳାସ, ବ୍ୟସନ ଓ ଭୋଗ ଆହ୍ୱାନ କରିଛି ଯଥେଚ୍ଛାଚାରିତା, ଅନୁଶାସନହୀନତା ଓ ସ୍ୱାର୍ଥପରାୟଣତା । ଏଥିରେ ସମାଜ ତିଷ୍ଠିପାରେ କି ? ପକ୍ଷାନ୍ତରରେ ସମାଜର ପ୍ରଗତି ଓ ସମୃଦ୍ଧି ନିର୍ଭର କରେ ସଂହତି ଉପରେ । ମିଳିମିଶି ଲାଗିପଡ଼ିବାର ନିରବଚ୍ଛିନ୍ନ ପ୍ରକ୍ରିୟାରେ ଉତ୍ସର୍ଗ ଓ ଉତ୍ସର୍ଗୀକୃତ ନିଷ୍ଠା ହିଁ ବ୍ୟକ୍ତି, ସମାଜ, ଦେଶ ଓ ବିଶ୍ୱପାଇଁ ଅଗ୍ରଗତିର ସୋପାନ । ତେବେ ଉତ୍ସର୍ଗ କାହା ପାଇଁ ?

ପେଟୁ ନିଜ ପେଟ ପାଇଁ ତନ, ମନ ଓ ଧ୍ୟାନ ଉତ୍ସର୍ଗ କରିଥାଏ । ପେଟର ପାରେଣି ମଧ୍ୟରେ ସ୍ୱର୍ଗସୁଖ ସେ କଳ୍ପନା କରେ । ପ୍ରତିବେଶୀର ଭୋକ ଶୋଷ ତିଳେହେଲେ ତାକୁ ବ୍ୟଥିତ କରେ ନାହିଁ । ଅନ୍ୟର ମୃତ୍ୟୁରେ ସ୍ଥାନ ଶୂନ୍ୟତା କେବଳ ନିଜ ସ୍ଥାନ ସଂପ୍ରସାରଣର କାରଣ ବୋଲି ସେ ସ୍ୱପ୍ନ ଦେଖେ । ନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ଏହି ମନୋଭାବ ପାଗଳପଣିଆ । ଏହା ଯେ ଆସୁରିକ—ଏଥିରେ ସନ୍ଦେହ ନାହିଁ । ଏହା ନିକୃଷ୍ଟତା ଓ ଅପବିତ୍ରର । ସମସ୍ତ ସଂସ୍କୃତି ଓ ସଭ୍ୟତାର ବଗୃରକୁ ଏହା ଉଲ୍ଲଙ୍ଘନ କରେ । ତେଣୁ ଏହାର ସ୍ଥାନ ଆଧୁନିକ ଯୁଗରେ ସଂପୂର୍ଣ୍ଣ ଅନାବଶ୍ୟକ ଓ ଅବାଞ୍ଛନୀୟ । ଏହାହିଁ ପଶୁବୃତ୍ତି । ବିବେକୀ ମାନବର ଏହା ଲକ୍ଷଣ ନୁହେଁ । ପଶୁ କେବଳ ସ୍ୱାର୍ଥ-ସର୍ବସ୍ୱ ହୋଇପାରେ । ପରାର୍ଥପରତା ମନୁଷ୍ୟର ସହଜାତ ଗୁଣ, ଏହାହିଁ ମାନବିକତା । ସେବାଧର୍ମର ଏହା ଉତ୍ସ । ଅନ୍ୟର ସୁଖ-ଦୁଃଖ ବୁଝି ସେମାନଙ୍କ ସହଭାଗୀ ହେବାହିଁ ସେବା ।ଉପନିଷଦ୍ ଘୋଷଣା କରେ, "ତେନ ତ୍ୟକ୍ତେନ ଭୁଞ୍ଜିଥା ।" ଅନ୍ୟ ପାଇଁ ଜୀବନକୁ ଉତ୍ସର୍ଗ କରିବାହିଁ ମନୁଷ୍ୟର ଧର୍ମ । ଏହା ଫଳରେ ନିଜ ଭିତରେ ନିଜେ କାରାରୁଦ୍ଧ ନହୋଇ ନିଜର ସଂପ୍ରସାରଣରେ ସେ ବସୁଧୈବ କୁଟୁମ୍ବକମ୍‌ର ସ୍ୱପ୍ନକୁ ସତ୍ୟ କରନ୍ତି । ଏଥିରେ ସେ ସାର୍ଥକ ଜୀବନ ଲାଭ କରନ୍ତି । ସଂସାରକୁ ବୈକୁଣ୍ଠ କରିଦିଅନ୍ତି । "ପରୋପକାରାୟ ସ୍ୱର୍ଗାୟ" ହେଉଛି ଆମ ସାର୍ଥକ ଜୀବନ, ପୌରାଣିକ ପରଂପରା ଓ ରାଜନୈତିକ ଦର୍ଶନର ପ୍ରତୀକ । ଆମ ସମାଜ, ପୁରାଣ, ଇତିହାସ ଓ ରାଜନୀତିରେ ଜୀବନ ଉତ୍ସର୍ଗ କରାଯାଉଛି ଜନସେବା ପାଇଁ । ବୁଦ୍ଧ, ଗାନ୍ଧି, ଗୋପବନ୍ଧୁ ପ୍ରମୁଖ ମନୀଷୀଗଣ କଣ୍ଟକିତ ଦୁର୍ଗମ ପଥ ବରଣ କରି ନେଇଛନ୍ତି । ସେମାନେ ଅମର ହୋଇଛନ୍ତି ମରଣଶରୀର ଧାରଣ କରି ସୁଦ୍ଧା ।

ଏହି ଆନୁଗତ୍ୟହିଁ ସଂହତି ନାମରେ ପରିଚିତ । ନିଜକୁ ଗୌଣକରି ନିଜକୁ କେବଳ ସାଧନ କରାଯାଇଛି ମହତ୍ତର ଆଦର୍ଶର ରୂପାୟନ ପାଇଁ । ଯୁଗେ ଯୁଗେ ଏହା

ମାନବିକତା । "ସର୍ବ ଭୂତହିତେ ରତା" । ଏହା ସମାଜକୁ ସୁଦୃଢ଼ କରିଛି ଓ ସମାଜର ଅଗ୍ରଗତିରେ ସହାୟକ ହୋଇଛି । ସେ ଯୁଗର ସମାଜ ପରି ଆଜି ଏହା ସ୍ଥିତିଶୀଳ ହୋଇନାହିଁ, ବରଂ ଏହା ନିରନ୍ତର ଗତିଶୀଳ । ଏହାର ଗତି କ୍ରମେ ଜଟିଳ ହୋଇଛି । ଜ୍ଞାନ-ବିଜ୍ଞାନର ପ୍ରଭାବ ଏହାକୁ ଚଳଚଞ୍ଚଳ କରିପକାଇଛି । ଲୋକମାନେ କୌଣସି ଅଞ୍ଚଳ ମଧ୍ୟରେ ଆବଦ୍ଧ ନରହି ବାରମ୍ବାର ସ୍ଥାନ ପରିବର୍ତ୍ତନ କରିଚାଲନ୍ତି ବ୍ୟବସାୟ, ବାଣିଜ୍ୟ, ଶିକ୍ଷା, ସୁଖସ୍ୱାଚ୍ଛନ୍ଦ୍ୟର ସୁବିଧା ପାଇଁ । ଦେଶବିଦେଶରୁ ବ୍ୟକ୍ତି ତଥା ତତ୍‌ସମ୍ପର୍କୀୟ ବିଶ୍ୱର ଧାରଣା ଲୋକମାନଙ୍କର ଦୃଷ୍ଟିବଳୟକୁ ବିସ୍ତାରିତ କରିଛି । ଏଣୁ ସଂସ୍କୃତିର ଖିଅକୁ ସୁଦୃଢ଼ କରିବାର ଆବଶ୍ୟକତା ବିଶେଷ ଅନୁଭୂତ ହେଉଛି । କେବଳ ସେତିକି ନୁହେଁ, ସମାଜର ଏକ ସାମଗ୍ରିକ ତଥା ଜୈବିକ ରୂପ ଥିବାରୁ ଏହାର ନିଜ ପ୍ରବୃତ୍ତି ଓ ପ୍ରକ୍ରିୟାଗୁଡ଼ିକୁ ପ୍ରୟୋଗ କରି ସଂସ୍କୃତିର ଧାରଣାକୁ ବିଶ୍ଳେଷଣ କରାଯାଇଛି । ଏହାକୁ ଯୁଗୋପଯୋଗୀ କରାଯାଇଛି । ଏ ସବୁକୁ ମାଧ୍ୟମ ରୂପେ ବ୍ୟବହାର କରାଯାଇପାରେ । ବିଶେଷତଃ ସାମାଜିକ କାର୍ଯ୍ୟକ୍ରମକୁ ଆୟୁଧରୂପେ ଗ୍ରହଣ କରି ସାଂସ୍କୃତିକ ଏକାତ୍ମତା, ସହାବସ୍ଥାନ ଓ ସହନଶୀଳତାର ପୁନଃସ୍ଥାପନ ଆଧୁନିକ ପରିସ୍ଥିତିରେ କରାଯାଇପାରେ ।

ଏକଥା ସୁସ୍ପଷ୍ଟ ଯେ ଆମ ଜାତୀୟ ଚରିତ୍ର ଯେପରି ଭାବରେ ବିକାଶଲାଭ କରିବାର କଥା ତାହା ଏ ଯାଏଁ ହୋଇପାରିନାହିଁ । କର୍ତ୍ତବ୍ୟ ସମ୍ପାଦନରେ ତତ୍ପରତା, ନ୍ୟାୟ ବିଚାରରେ ନିରପେକ୍ଷତା, ଜାତୀୟ ସ୍ୱାର୍ଥର ସୁରକ୍ଷାରେ ଗୋପନୀୟତା ଓ ଜନସେବାରେ ଉତ୍ସର୍ଗୀକୃତତାରେ ନିଷ୍ଠା ଓ ଋଜୁମାନ ରକ୍ଷା କରାଯାଇପାରୁନାହିଁ । ବରଂ କ୍ଷତି କ୍ରମେ କ୍ରମେ ବଢ଼ି ଆମକୁ ବିପିନ୍ନ କରିଦେଉଛି । ସମ୍ଭବତଃ ବିସ୍ମୟ ପ୍ରକାଶରେ ଆମେ ଯେତେ ତତ୍ପର, ପର-ମୁହୂର୍ତ୍ତରେ ଏସବୁ ଅପକର୍ମର ମାତ୍ରା ବଢ଼ାଇବାରେ ଆମେ ସେତେ ପଶ୍ଚାତ୍‌ପଦ ନୋହୁଁ । ଆଦର୍ଶର ବିଚ୍ୟୁତି ଘଟିବ ଓ ଏହା କେବଳ ଏ ଯୁଗର କଥା ନୁହେଁ—ଏପରି ଧାରଣା ମାମୁଲି ହୋଇଗଲାଣି । ଯେଉଁମାନେ ସମାଜର କର୍ଣ୍ଣଧାର ସେମାନଙ୍କ ବଚନ ଓ ବ୍ୟବହାର ଏହି ପରିପ୍ରେକ୍ଷୀରେ ପ୍ରମାଣୀଭୂତ କରିଦିଏ । ଆଦର୍ଶ ଅସମ୍ଭବ ଓ ଅନାଦର୍ଶ ହିଁ କେବଳ ସମ୍ଭବ—ଏ ପ୍ରକାର ଧାରଣା ଦ୍ରୁତ ପ୍ରସାରଲାଭ କରୁଛି ଓ ଏହାକୁ ଜବରଦସ୍ତ ପ୍ରତିରୋଧ କରାନଗଲେ ସମାଜ ପୋଡ଼ି ପାଉଁଶ ହୋଇଯିବ । ସଙ୍କୀର୍ଣ୍ଣ ସ୍ୱାର୍ଥସିଦ୍ଧି ପାଇଁ ସମାଜର ସମ୍ମତ ଓ ପରୀକ୍ଷିତ ଚଳଣି, ମୂଲ୍ୟବୋଧ, ନିୟମକାନୁନଗୁଡ଼ିକୁ ଅନାୟାସରେ ଜଳାଞ୍ଜଳି ଦିଆଯାଉଛି । ଏଗୁଡ଼ିକ ଆମ ବ୍ୟକ୍ତିଗତ ତଥା ସାମାଜିକ ଜୀବନର ଧାରକ । ଏଗୁଡ଼ିକୁ ଯଦି ପିଲାଖେଳ ପରି ମନେକରାଯାଏ ଓ ଖଣ୍ଡେ ଛିଣ୍ଡା କନା ବା କାଗଜ ପରି ଆକାଶକୁ ଉଡ଼ାଇ ଦିଆଯାଏ, କିଏ ଆମକୁ ସାମାଜିକ ସମର୍ଥନ ଦେବ ? ଆଇନ ଅଦାଲତ ଓ ଆରକ୍ଷୀ ଆମକୁ ଏହି ସ୍ଖଳନରୁ ଟେକି ଧରିବେ କି ? ସହଜ ସୁବିଧାର ଉପଭୋଗ ହେଉଛି ଭୋଗ ଓ ଏହି ଭୋଗରୁ ଜନ୍ମ ନିଏ ରୋଗ । ରୋଗ ଅଣିଦିଏ ମୃତ୍ୟୁ, ବ୍ୟକ୍ତି ପାଇଁ ତଥା ସମାଜ ପାଇଁ । ଆମ ଗଣମାଧ୍ୟମ ଯଦି ଏ ଦିଗରେ ପ୍ରହରୀରୂପେ କାର୍ଯ୍ୟ କରେ, ଆମେ ଏଥିରୁ ନିଷ୍କୃତିର ସୂତ୍ର

ପାଇପାରିବା । ପୁଣି ସେସବୁ କଅଣ ଏହି ଅପରାଧରୁ ମୁକ୍ତ କି ? ସେସବୁ ମଧ୍ୟ କଣ୍ଟକିତ ଓ କଳଙ୍କିତ ।

ସମୟାନୁବର୍ତ୍ତିତା ଜାତୀୟ ତଥା ବ୍ୟକ୍ତିଗତ ଜୀବନର ଅମୂଲ୍ୟ ସମ୍ପଦ । ଶୃଙ୍ଖଳିତ ଜୀବନ ଯାପନର ଏହା ଅନ୍ୟତମ ମୁଖ୍ୟ ଉପାଦାନ । ସମୟର ଅତ୍ୟଧିକ ଅପଚୟକୁ ସମ୍ପୂର୍ଣ୍ଣ-ଭାବରେ ଅବରୋଧ କରି ଉତ୍ପାଦନଶୀଳତାର ସ୍ରୋତ ଚିରଚଞ୍ଚଳ ପ୍ରବାହିତ କରିବାରେ ସାହାଯ୍ୟ କରେ । କିନ୍ତୁ ହେଉଛି କଅଣ ? ଚିରପୋଷିତ ତଥା ଆଧୁନିକ ଯୁଗର ପରିପୁଷ୍ଟ ମୂଲ୍ୟବୋଧ ଗୁଡ଼ିକ ପରି ଏହି ମୂଲ୍ୟବୋଧର ଅପମୃତ୍ୟୁ ଅଚିରେ ଘଟୁଛି । ଏହି ଅପରାଧ ପାଇଁ ଅନୁସନ୍ଧାନ ଓ ଅନୁଶୋଚନା ମୁହୂର୍ତ୍ତିକ ପାଇଁ ନାହିଁ । ପଦପଦବୀ ତଥା ଆଭିଜାତ୍ୟର ଅହଙ୍କାର, ଅପେକ୍ଷାରତ ଶ୍ରୋତୃମଣ୍ଡଳୀଙ୍କ ପ୍ରତି ପଦାଘାତ ଓ ମୂଲ୍ୟବୋଧର ଅବକ୍ଷୟ ପ୍ରତି ଉଦାସୀନତା ଆଦି କାରଣ ଯୋଗୁଁ ଏହା ଘଟୁଛି । ନଗର୍ହଣୀୟ ବରଂ ଶ୍ରେୟସ୍କର; କିନ୍ତୁ ଅସଂଖ୍ୟ ଜୀବନର ଜୀବନବ୍ୟାପୀ ସାଧନା ଯୋଗୁଁ ମିଳିଥିବା ମୂଲ୍ୟବୋଧଗୁଡ଼ିକୁ ଆଘାତ କରିବାର ପ୍ରୟାସ ଭୟଙ୍କର । ଆଜି ଯଦି ଶିକ୍ଷାର୍ଥୀ ସମୟାନୁବର୍ତ୍ତୀ ହୁଅନ୍ତି ନାହିଁ, ତାଙ୍କ ପାଇଁ ଦଣ୍ଡବିଧାନର ବ୍ୟବସ୍ଥା ଅଛି । ଶିକ୍ଷକ, କର୍ମୀ, କର୍ମଗୁରୁ ମଧ୍ୟ ଏହି ଶୃଙ୍ଖଳାର ଗଣ୍ଡି ଭିତରେ । କିନ୍ତୁ ଜୀବନର ସାଧାରଣ କ୍ଷେତ୍ରରେ ଓ ଆନୁଷ୍ଠାନିକ ଜୀବନର ସହସ୍ର ଉଦାହରଣରେ ସମୟାନୁବର୍ତ୍ତିତାର ଯେଉଁ ଉଲ୍ଲଙ୍ଘନ କରାଯାଉଛି, ଆମେ କାହାକୁ ଦାୟୀ କରୁଛୁ ? ଜାତୀୟ ଚରିତ୍ର କିଣ୍ଟିତ ଭାବରେ ଦୁର୍ବଳ ହୋଇଯାଉଛି । ବରଂ ଚରିତ୍ର ବିକାଶର ପରମ୍ପରା କଳଙ୍କିତ ହେଉଛି । ସେପରି ସ୍ଥଳରେ ସଙ୍ଗଠ ସୁଦୂରପରାହତ । ଯଥା ସମୟରେ କାର୍ଯ୍ୟ କରିବାର ନିଷ୍ଠା ଆମକୁ ଏଥିରୁ ରକ୍ଷା କରିବ । କୌଣସି ଲୋଭ, ଲାଭ ଓ ପ୍ରଲୋଭନ ପ୍ରତି ଦୃଷ୍ଟି ଦେବା ଅନୁଚିତ ।

ଏଥିରୁ ମଧ୍ୟ ଆହୁରି ସୂଚିତ ହୁଏ ଯେ, ଆମର ଭିତର ଓ ବାହାର ମଧ୍ୟରେ ଘୋର ପାର୍ଥକ୍ୟ ରହିଯାଉଛି । ଏହା ବ୍ୟକ୍ତି ଜୀବନରେ ଯେପରି ସତ୍ୟ, ସାମାଜିକ ଜୀବନରେ ସେପରି ପ୍ରମାଣିତ । ଏହା ମଧ୍ୟ ଦେଖାଯାଏ ଯେ ବ୍ୟକ୍ତି ଜୀବନର ଏହି ବ୍ୟବଧାନ ସାମାଜିକ ଜୀବନକୁ ବିଭକ୍ତ କରିଛି । ପକ୍ଷାନ୍ତରରେ ଏହା କୁହାଯାଇପାରେ ଯେ ସମାଜର ଗଠନବିଧିରେ ଏ ପ୍ରକାର ବିଭାଜନ, ବ୍ୟକ୍ତିକୁ ପରାଭୂତ କରିପକାଉଛି । ସମାଜ ଓ ବ୍ୟକ୍ତି ମଧ୍ୟରେ ଘାତପ୍ରତିଘାତର ଯେଉଁ ସମ୍ପର୍କ ରହିଛି ତାହା ହିଁ ଏ କ୍ଷେତ୍ରରେ ପ୍ରତିଫଳିତ ହୋଇଛି । ଆମେ ଯାହା କହୁଛୁ, ତାହାକୁ କାର୍ଯ୍ୟରେ କରୁନାହୁଁ । ଏହି ଦୋଷଗୁଣପଣିଆ ଆମ ସଂସ୍କୃତିରେ ଉପେକ୍ଷା କରାଯାଇଛି ଓ ଏହାକୁ ବର୍ତ୍ତମାନ ଆମେ ଆଦର କରିବା ଦ୍ୱାରା ଆମ ଜାତୀୟ ଚରିତ୍ର ଓ ସଙ୍ଗଠ ଘୋର ବିପଦର ସମ୍ମୁଖୀନ । ଆମ ଜାତୀୟତା, ସ୍ୱାଭିମାନ ଓ ସ୍ୱଧର୍ମ ଦୁର୍ବଳ ହୋଇ-ପଡ଼ୁଛି । ମହାତ୍ମାଗାନ୍ଧି ଏହି ସଙ୍କଟରୁ ନିଜ ସାଧନା ବଳରେ ଉଦ୍ଧାର ପାଇଁ କହିବାକୁ ସମର୍ଥ ହୋଇଥିଲେ, "ମୋ ଜୀବନ ହିଁ ମୋର ବାର୍ତ୍ତା ।" ଏହାହିଁ ସତ୍ୟର ପରୀକ୍ଷା । ଯାହା କହୁଛ, ତାହା କର ଓ ଯାହା କରୁଛ, ତାହା କହ—ଏହାହିଁ ଥିଲା ବୁଦ୍ଧଦେବଙ୍କ ଉପଦେଶ ।

ଆଜି ଏହି ବିଜ୍ଞାନର ଯୁଗରେ ଅମ୍ଭେମାନେ ବିଜ୍ଞାପନ-ସର୍ବସ୍ୱ ହେବାଦ୍ୱାରା କେବଳ ପ୍ରଚାର ଓ ପ୍ରବଞ୍ଚନା ସାର ହେଉଛୁ । ଅମ୍ଭେମାନେ ତଥା ଆମ ସମାଜ କାୟମନୋବାକ୍ୟରେ ଏକନିଷ୍ଠ ଓ ଏକୀଭୂତ ହୋଇପାରୁନାହିଁ । ବସୁଧା ବିଭକ୍ତ ଜୀବନ କେବେହେଁ ସଂସ୍କୃତିର ସହାୟକ ନୁହେଁ ଏବଂ ଏହା ଉତ୍ସର୍ଗୀକୃତ ଜୀବନର ପରିପନ୍ଥୀ । ସେଥିପାଇଁ ଭଗବତ୍ ଗୀତାରେ "ବିଭକ୍ତେଷୁ ଅବିଭକ୍ତଂ" ସେ ହେବେ ବୋଲି କୁହାଯାଇଛି ଯେ "ସର୍ବଭୂତେଷୁ ସର୍ବ ଅବ୍ୟୟଂ ଈକ୍ଷତେ ।" ଆକାଶ ପରି ଆମକୁ ଅବିଭକ୍ତ ରହିବାକୁ ହେବ । ଆକାଶ ବିଭିନ୍ନ ଜୀବ ଓ ବସ୍ତୁରେ ବିଭକ୍ତ ନୁହନ୍ତି । ଠିକ୍ ସେପରି ଆମ ସମାଜରେ ବିଭିନ୍ନ ଧର୍ମାବଲମ୍ବୀ ଓ ଭାଷାଭାଷୀ ଲୋକ ଅଛନ୍ତି । ଏହାଫଳରେ ଆମ ସମାଜ ଅତି ଚମତ୍କାର ଭାବରେ ଗତିଶୀଳ ଓ ପରିପୂରକ ହୋଇଛି । ବିଭିନ୍ନତା ମଧ୍ୟରେ ଅଭେଦତ୍ୱ ହେଉଛି ଆମ ଜାତୀୟ ଜୀବନର ମୂଳନୀତି । ଆମର ଏହି ନିକଟତମ ସମାଜରେ ଏହି ନୀତି ଉପଲବ୍ଧି କରିବା । ଆମେ ସଂହତ ହୋଇ ଆମ ଗୋଷ୍ଠୀ ତଥା ସମାଜରେ ଏକାତ୍ମ ହୋଇପାରିଲେ ଆମ ଜାତୀୟ ଚରିତ୍ରର ବିକାଶ ଘଟିବ । ଆମ ସଂସ୍କୃତିର ସୁରକ୍ଷା ଓ ଶ୍ରୀବୃଦ୍ଧି କରିଯାଇପାରିବ । ଆମ ପୂଜାପାର୍ବଣ, ମେଳାମହୋତ୍ସବ, ପୁଣ୍ୟପର୍ବ, ଜାନିଯାତ୍ରା ଆଦିରେ ଧର୍ମ, ଭାଷା, ପ୍ରକୃତି ଆଦି ବିଭିନ୍ନତା ଯୋଗୁଁ ସାଂସ୍କୃତିକ ବିଭବର ବୈଚିତ୍ର୍ୟ ଅନୁଭବ କରିବା । ନାଟ୍ୟତାମସା, ଗୀତବାଦ୍ୟ, ହାସ୍ୟରସ, ସାଜସଜ୍ଜା, ଆନନ୍ଦ ଉଲ୍ଲାସ ଆଦି ମାଧ୍ୟମରେ ଆମେ ସେହି ବୈଚିତ୍ର୍ୟର ପ୍ରକାଶକୁ ନିରେଖିବା । ଅବିକଳ ସମତାରେ ଜୀବନ ନଥାଏ । ବିଭିନ୍ନତାର ସ୍ରୋତ ଓ ଗତି ମଧ୍ୟରେ ସୌନ୍ଦର୍ଯ୍ୟର ଗୁଞ୍ଜରଣ ଆମେ ଲକ୍ଷ୍ୟ କରିବା । ବିଭିନ୍ନତା ମଧ୍ୟରେ ହାରମୋନି ବା ସମନ୍ୱୟ ଆମ ଜୀବନକୁ ବର୍ଣ୍ଣାଢ୍ୟ କରିବ ।

ଦୁର୍ଭାଗ୍ୟକ୍ରମେ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକମାନେ ଏହି ବିଭିନ୍ନତାର ସୁଯୋଗ ନେଇ ନିଜକୁ ପ୍ରତିଷ୍ଠିତ କରନ୍ତି । ଆମ ରାଜନୀତି ଓ ସମାଜନୀତି ଏଯାଏଁ ଅନେକ ସମୟରେ ଭାଷାଗତ, ଧର୍ମ ସମ୍ବନ୍ଧୀୟ ଓ ସାମ୍ପ୍ରଦାୟିକ ବିଭେଦକୁ କେନ୍ଦ୍ର କରି ଗୋଳିଆ ପାଣି କଙ୍କଡ଼ାକୁ ସୁହାଇଲା ପରି ଫାଇଦା ଉଠାନ୍ତି । କଳିକନ୍ଦଳ ଲାଗିଯାଏ । ଏହି ସଙ୍କୀର୍ଣ୍ଣତାର ଊର୍ଦ୍ଧ୍ୱରେ ସାମାଜିକ ଓ ରାଜନୈତିକ ବିଚାର ରହିବା ଉଚିତ । କ୍ଷମତାର ରାଜନୀତି ଅନେକ ସମୟରେ ପକ୍ଷପାତ ବିଚାର କରନ୍ତି ଓ ସର୍ବଗ୍ରାସୀ ହୋଇପଡ଼ନ୍ତି । ଏହା ଯେପରି କ୍ଷତିକାରକ ସାମ୍ପ୍ରଦାୟିକ ରାଜନୀତି ସେହିପରି ମାରାତ୍ମକ । ବେଳେବେଳେ ପିତୃପକ୍ଷୀଆ ରାଜନୀତି ଏପରି ପ୍ରବଳ ଓ ପ୍ରଚଣ୍ଡ ହୋଇପଡ଼େ ଯେ ସ୍ୱାବଲମ୍ବନ ଭିତ୍ତିରେ ଲୋକ ଶକ୍ତିର ବିକାଶ ହୋଇପାରେ ନାହିଁ । କେବଳ ନୁହେଁ, ଏହା ଫଳରେ ନିର୍ଦ୍ଦିଷ୍ଟ ଅଞ୍ଚଳର ମାନବିକ ଓ ପ୍ରାକୃତିକ ସମ୍ବଳର ସଦୁପଯୋଗ ଏବଂ ବିକାଶ କରି-ଯାଇପାରେ ନାହିଁ ।

ଏହିପରି ନାନା କାରଣରୁ ଯୋଜନାବଦ୍ଧ ବିକାଶ କରାନଯିବା ଫଳରେ ଆଞ୍ଚଳିକ ବୈଷମ୍ୟ ଉତ୍କଟ ହୋଇପଡ଼େ । ବିକାଶର ବନ୍ୟା ସର୍ବତ୍ର ସମସ୍ତଙ୍କୁ ପ୍ଲାବିତ ନ କରିବା

ଫଳରେ ଆଳସ୍ୟ, ଅସନ୍ତୋଷ, ନିଷ୍କ୍ରିୟତା ଓ ନୈରାଶ୍ୟର ବାତାବରଣ ଖେଳଯାଏ । ବିକାଶ ଦୃଷ୍ଟିରୁ କେତେକ ଅଞ୍ଚଳ ଯୋଗ୍ୟ ଓ କେତେକ ଅଯୋଗ୍ୟ ବୋଲି ଘୋଷଣା କରିବା ଫଳରେ ଗ୍ରହଣ କରାଯାଉଥିବା କୌଶଳଗୁଡ଼ିକ ଯେ ଅନୁପଯୋଗୀ ଏହା ସହଜରେ ଜଣାପଡ଼େ । ଏହା ଫଳରେ ଆଞ୍ଚଳିକ ବୈଷମ୍ୟ ଅଧିକ ଉତ୍କଟ ହୋଇପଡ଼େ ଏବଂ ଏ ସବୁ କାରଣରୁ ଉତ୍ତେଜନା ଅଧିକ ବୃଦ୍ଧିପାଏ । ଏହା ସହରର ଅନ୍ତରାୟ ହୁଏ । ତେଣୁ ଏ ସବୁର ନିରାକରଣ କରିବା ଉଚିତ । ବିକାଶର ଧାରାକୁ ସମାନ ଭାବରେ ସର୍ବତ୍ର ଅବ୍ୟାହତ ରଖିବା ଆବଶ୍ୟକ । ଉତ୍ତେଜନା ବୃଦ୍ଧି ପାଇଁ ଝିଙ୍କିଟି ଖେଳରୁ ମହାଭାରତ ଯୁଦ୍ଧର ସୂତ୍ରପାତ ହୁଏ । ତେଣୁ ଅସନ୍ତୋଷ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ତୁରନ୍ତ ସମୟୋପଯୋଗୀ ବ୍ୟବସ୍ଥା କରାଯିବା ଉଚିତ । ବିବାଦ ଓ ପାର୍ଥକ୍ୟର ଦୂରୀକରଣ ପାଇଁ "ଶାନ୍ତିପୂର୍ଣ୍ଣ ଓ ସାମ୍ବିଧାନିକ ସମାଧାନ"ର ପନ୍ଥାରେ ବିଶ୍ୱାସ ରଖିବା ଓ ଏହାକୁ ଗ୍ରହଣ କରିବା ଉଚିତ । ହିଂସା-ପ୍ରଣୋଦିତ ହୋଇ ପ୍ରତିଶୋଧ ଓ ପ୍ରତିହିଂସାପରାୟଣ ହେବା ଆଦୌ ଉଚିତ ନୁହେଁ । ବ୍ୟକ୍ତି ମାତ୍ରେ ହିଁ ନାଗରିକ ଓ ତାଙ୍କର କର୍ତ୍ତବ୍ୟ ସମ୍ପାଦନ ହେତୁ ଦାବି ସାବ୍ୟସ୍ତ କରିବା ଦିଗରେ ସଚେତନତା ଜାଗ୍ରତ କରିବା ଉଚିତ ।

ଜାତିଭେଦ, ଧର୍ମ, ସମ୍ପ୍ରଦାୟ ଆଦି ଦୃଷ୍ଟିରୁ ଆମ ସମାଜ ସ୍ତରୀକୃତ ହୋଇଛି । ବଡ଼ ସାନ ଆଦି ଭେଦ ସମାଜକୁ ବହୁ ଶ୍ରେଣୀରେ ପରିଣତ କରିଛି । ଗାନ୍ଧି ପରିକଳ୍ପିତ ସତ୍ୟ ଓ ଅହିଂସା ଆଧାରିତ ତଥା ଶୋଷଣରହିତ ସହଯୋଗୀ ସମାଜର ପ୍ରତିଷ୍ଠା ନହେବା ଫଳରେ ଅତି ସାମାନ୍ୟ ସଂଘର୍ଷ ଓ ମନୋମାଳିନ୍ୟ ଅଳ୍ପ ସମୟ ମଧ୍ୟରେ ଭୟଙ୍କର ହୋଇପଡ଼ୁଛି । ଅଛୁଆଁ ଛୁଆଁ ଭେଦ ଏଯାଏଁ ପୁରାପୁରି ଲୋପ ପାଇନାହିଁ । ସମାଜର ତଳସ୍ତରରେ ନିକ୍ଷେପିତ ଲୋକଙ୍କର ଉନ୍ନତି ପାଇଁ ବ୍ୟବସ୍ଥାକୁ ଉଦାର ଦୃଷ୍ଟିରେ ଆମ୍ଭମାନଙ୍କ ଅନ୍ତରରେ ଦେଖାଯାଉନାହିଁ । ସେମାନଙ୍କ ଉନ୍ନତି ଅନେକ ସମୟରେ ବିଶୃଙ୍ଖଳ ହୋଇ ସାମାନ୍ୟ ସାମାନ୍ୟ କଳହରେ ଧନଜନ ହାନି ଘଟୁଛି । ଆମେ ରାଜନୈତିକ ସ୍ୱାଧୀନତା ହାସଲ କରିଥିଲେ ହେଁ ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମ ଗ୍ଲୁରହିଛୁ । ନାନା ସ୍ୱାର୍ଥ ଏଥିରେ ଜଡ଼ିତ ରହିବାରୁ ଏହା ସହଜସାଧ୍ୟ ହେଉନାହିଁ । ଅଥଚ ଏଥିରୁ ଆମ ସହର ପଥରେ କଣ୍ଟକ ସୃଷ୍ଟି କରୁଥିବା ସମସ୍ୟା ଜାତ ହେଉଛି । ଧର୍ମନିରପେକ୍ଷତା, ସମାଜବାଦ ଓ ଗଣତନ୍ତ୍ର ଆମ ସମ୍ବିଧାନ ସ୍ୱୀକୃତ ଲକ୍ଷ୍ୟ ହେଲେହେଁ ଆମେ ଏଯାଏଁ ଏହାକୁ କାର୍ଯ୍ୟକାରୀ କରିପାରିନାହୁଁ । ଏ ଦିଗରେ ଆମର ଆପ୍ରାଣ ଉଦ୍ୟମ ପାଇଁ ଉତ୍ସର୍ଗୀକୃତ ମନୋଭାବରେ କାର୍ଯ୍ୟକରିବାର ଅବକାଶ ଆହୁରି ଅଧିକ ରହିଛି ।

ଆମ ବିକାଶମୂଳକ ଯୋଜନାର ବ୍ୟୟ ଅନେକାଂଶରେ ବାଟମାରଣା ହେଉଛି, ଏହା ସର୍ବସ୍ୱୀକୃତ । ନିରକ୍ଷର, ନିରବ, ନିଷ୍କ୍ରିୟ, ନିରାଶ ଓ ନିପୀଡ଼ିତ ଜନତାଙ୍କୁ ଶୋଷଣ କରିବା ସହଜ ହୋଇଥିବାରୁ ସ୍ୱାର୍ଥାନ୍ଧ ଶକ୍ତି କ୍ରମେ ସୁଦୃଢ଼ ହେଉଅଛି ଓ ଏହାର ସଂଖ୍ୟା ମଧ୍ୟ ବଢ଼ୁଛି । ଏହା ଫଳରେ ଅସାଧୁତା ଓ ଅର୍ଥାର୍ଜନର ଅହେତୁକ ବାସନା ଅତିମାତ୍ରାରେ

ବଢ଼ିଯାଉଛି । ଅର୍ଜନ ସହିତ ବର୍ଜନ ନାହିଁ କିମ୍ବା ସଦୁପାୟରେ ଶ୍ରମୋପାର୍ଜିତ ଅର୍ଜନ ମଧ୍ୟ ନାହିଁ । ଏହାଛଡ଼ା ଜନସଂଖ୍ୟା ବିସ୍ଫୋରଣ ସହିତ ମୁଦ୍ରାସ୍ଫୀତି, ଦ୍ରବ୍ୟାଦିର ଆବଶ୍ୟକ ମୁତାବକ ଉତ୍ପାଦନର ଅଭାବ ଅଯଥା ସହଜ ଅର୍ଥୋପାର୍ଜନ ଉପରେ ଗୁରୁତ୍ୱ ଦିଆଯାଉଛି । ବିଭିନ୍ନ ନିଶା ଆଜି ସମାଜକୁ ଗ୍ରାସ କରିଛି । ଏହି ପ୍ରସଙ୍ଗରେ ଭୀମ ଭୋଇଙ୍କ ନିମ୍ନୋକ୍ତ ପଦଟି ବିଚାର୍ଯ୍ୟ—

"ଧନମଦ, ପଣମଦ, ସ୍ତ୍ରିଶ୍ରମଦ / ମାସ୍ତାମଦ ଖାଇ ହେଉଛି ଘାରି
କାମ କ୍ରୋଧ ଯେଣୁ ଧର୍ମକୁ ନମାନ / ପ୍ରାଣରୁ ଅଧିକ ଅଛି ଆଦୋର ॥"

ସମାଜର ସୁରକ୍ଷା ସହିତ ସଂସ୍କୃତି ଜଡ଼ିତ । ଆହୁରି ମଧ୍ୟ ସଂସ୍କୃତି ସହିତ ସମାଜର ସ୍ଥିରତା, ପ୍ରଗତି ଓ ସମୃଦ୍ଧି ଜଡ଼ିତ । ଏହି ଗିଅଁଟିକୁ ଏକକାଳୀନ ଧରିପାରିଲେ ଆମ ଦେଶରେ ଶାନ୍ତି, ମୈତ୍ରୀ ଓ ପ୍ରଗତିର ପ୍ରତିଷ୍ଠା ସହଜ ସମ୍ଭବ ।

---

# ପନ୍ଦରର ପଦଧ୍ୱନି

ପନ୍ଦରର ପଦଧ୍ୱନି ଆମ କାନରେ ଶୁଭୁଛି କି ? କେବଳ ସେଦିନ ନା ସବୁଦିନ ଓ ସବୁ ମୁହୂର୍ତ୍ତ ? କେବଳ କେତୋଟି ବଛା ବଛା ସ୍ଥାନରେ, ନା ସର୍ବତ୍ର ବା ସମସ୍ତ ସ୍ଥାନରେ ? ଏହି ପଦଧ୍ୱନି ଆମ କଥା, କାମ ଓ ଚିନ୍ତାରେ ଧ୍ୱନିତ ହେଉଛି କି ? ଆମେ କ'ଣ ଶୁଣିଛୁ ' ପରମୁହୂର୍ତ୍ତରେ ପାସୋରି ନେବାପାଇଁ ? ଗୋଟିଏ ସ୍ୱାଧୀନ ଦେଶରେ ସ୍ୱାଧୀନତା ଦିବସର ମହତ୍ତ୍ୱ ଆମକୁ ମହତୋ ମହୀୟାନ କରୁଛି କି ?

ଅନ୍ୟାନ୍ୟ ସଂଖ୍ୟା ସମେତ ପନ୍ଦର ସୃଷ୍ଟି କରେ ଗଣିତର କୁହୁକ । ସେଥିରେ ଥାଏ ବିସ୍ମୟ, ଉଲ୍ଲାସ ଓ ସାଧନାର ଆହ୍ୱାନ । ଗଣିତରେ ଥାଏ ସୌନ୍ଦର୍ଯ୍ୟ ଓ ସୌଷ୍ଠବ, ଯାହାକି ଗାଣିତିକ ବ୍ୟତୀତ ଅନ୍ୟ କାହାରି ଉପଭୋଗ୍ୟ ନୁହେଁ । ଏହି ସୀମିତ ପରିସରରେ ଗଣିତର ପନ୍ଦର ଏକ ଅମୂର୍ତ୍ତ ଜୟଗାନ କରିଚାଲିଥାଏ । କିନ୍ତୁ ପନ୍ଦର, ୧୯୪୭ ମସିହାର ଅଗଷ୍ଟ ମାସ ସହିତ ଜଡ଼ିତ ହୋଇ ମୂର୍ଚ୍ଛନାର ପସରା ମେଲିଦିଏ, ଇତିହାସର ପୃଷ୍ଠାରେ ବିଶ୍ୱ ତଥା ଭାରତ ବକ୍ଷରେ । ଏକ ଅନନ୍ୟସାଧାରଣ କୃତିର କୀର୍ତ୍ତିସ୍ତମ୍ଭ ଭାବରେ ଅନନ୍ତ କାଳର ଜୟଗାଥା କୀର୍ତ୍ତିତ ହୁଏ । "ଯାର ରାଜ୍ୟ କେବେ ନୁହେଁ ଅସ୍ତମିତ ଦିନମଣି ତେଜୋଧାମ"—ଏପରି ଆସ୍ଫାଳନ ତଥା ଦର୍ପର ସାମ୍ରାଜ୍ୟବାଦ ଯେ ଚିର ସତ୍ୟ ହୋଇ ରହିବ, ଏହାକୁ ଅପ୍ରମାଣ ଓ ଅସତ୍ୟ ପ୍ରମାଣିତ କରେ ୧୯୪୭ ଅଗଷ୍ଟ ପନ୍ଦର । ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ଶକ୍ତି ଚିର ଅପରାଜେୟ, ଏହା ଏ ପର୍ଯ୍ୟନ୍ତ ଇତିହାସର ପରୀକ୍ଷିତ ସତ୍ୟ । କିନ୍ତୁ ସେ ଯୁଗରେ ଅଶୋକଙ୍କ ଉଦ୍‌ଘୋଷିତ "ହିଂସାପ୍ରଣୋଦିତ ତରବାରିର ଜୟ, ଜୟ ନୁହେଁ"—ଏ ଯୁଗରେ ଏହାର ପୁନରାବୃତ୍ତି ଘଟେ ଏହି ସ୍ମରଣୀୟ ଦିବସରେ । ଅଧିକନ୍ତୁ ଏହା ମଧ୍ୟ ପ୍ରତିପାଦିତ କରେ ଯେ—ସତ୍ୟ, ଅହିଂସା ଓ ତ୍ୟାଗ ଉପରେ ପ୍ରତିଷ୍ଠିତ ଆତ୍ମଶକ୍ତି ତା'ର ନ୍ୟାୟସମ୍ମତ ଅଧିକାରରୁ କେବେ ହେଁ ବଞ୍ଚିତ ନୁହେଁ । ପକ୍ଷାନ୍ତରରେ ଏ ପ୍ରକାର ସାଧନାର ସିଦ୍ଧି ସୁନିଶ୍ଚିତ । ଏହି ସାଧନା ଶ୍ରମଭିତ୍ତିକ ଓ ସମୟସାପେକ୍ଷ ହେଲେ ହେଁ ଏହାର ଲକ୍ଷ୍ୟ ପ୍ରାପ୍ତି ସାଧନାର ଅଙ୍ଗୀଭୂତ ହୋଇଯାଏ । ଉପରୋକ୍ତ ଐତିହାସିକ ଦିବସର ଉଲ୍ଲେଖନୀୟ ଉପଲବ୍ଧି ହେଉଛି—ସତ୍ୟମେବ ଜୟତେ । ଏହା ଯୁଗେ ଯୁଗେ ପୁନଃ ପୁନଃ ପ୍ରତିପାଦିତ ହୋଇଆସୁଛି । ଏହାର ଭାଷା ଭାରତୀୟ ବା ପ୍ରାଚ୍ୟ ଭୂଖଣ୍ଡର ହୋଇ-ପାରେ; କିନ୍ତୁ ଏହାର ଭାବ ଦେଶ, କାଳ, ପାତ୍ର ନିର୍ବିଶେଷରେ ଅତୁଟ ରହିଛି । ଏହି ସତ୍ୟଟି ବିଶ୍ୱର ବିରାଟ ବିଭେଦକୁ ଅଭେଦ ସୂତ୍ରରେ ଗୁନ୍ଥି ରଖିଛି । ସେଥିପାଇଁ

ସତ୍ୟମ୍ ବଦ—ବିଭିନ୍ନ ଭାଷାରେ ନୀତିବାକ୍ୟ ହୋଇ ରହିଛି । କାରଣ ସତ୍ୟ ଓ ସତ୍ୟବାଦୀ ଯୁଗେ ଯୁଗେ ବିଜୟ ବିମଣ୍ଡିତ ହୋଇଛି । ତେଣୁ ଗାନ୍ଧିଜୀଙ୍କ ଭାଷାରେ ଈଶ୍ୱରହିଁ ସତ୍ୟ ଓ ପଶ୍ଚାତ୍ତରରେ ସତ୍ୟହିଁ ଈଶ୍ୱର । ଈଶ୍ୱର ହେଉଛନ୍ତି ସତ୍ୟର ସତ୍ୟ; ମହାସତ୍ୟ ଚିରନ୍ତନ ସତ୍ୟ; ଅକ୍ଷୟ ଅନନ୍ତ—ଆଦି ସତ୍ୟ ।

ପ୍ରଦୋଷ ଓ ପ୍ରଭାତ ପରି ୧୯୪୭, ଅଗଷ୍ଟ ପନ୍ଦର ତାରିଖଟି ହେଉଛି ଏକ ସନ୍ଧିକ୍ଷଣ । ଅନ୍ଧକାର ହଟିଛି ଓ ଆଲୋକ ଉଠି ଆସିଛି । ପରାଧୀନତାର ଶୃଂଖଳ ଛିନ୍ନ ହୋଇଛି ଓ ସ୍ୱାଭିମାନ ଭିତରେ ଆତ୍ମନିୟନ୍ତ୍ରଣ ତଥା ଆତ୍ମପ୍ରକାଶର ଆଲୋକ ବିଚ୍ଛୁରିତ ହେଉଛି । ପର-ମୁଖାପେକ୍ଷିତାର ଅଚେତା ଅପସରି ଯାଇଛି ଓ ବ୍ୟକ୍ତି ତଥା ସମାଜ ଜୀବନର ଚେତା ଆମ ହୃଦୟରେ ଉଦ୍‌ଭାସିତ ହୋଇଛି । ଜଡ଼ତା, ଉଦାସୀନତା ଓ ଭାଗ୍ୟବାଦିତା ବଦଳରେ କର୍ମଠତା, ଆଗ୍ରହ ଓ ସଚେଷ୍ଟତାର ଦ୍ୱାର ଉନ୍ମୁକ୍ତ ହୋଇଛି । ୧୯୪୭ ମସିହା ଅଗଷ୍ଟ ମାସ ୧୪ ତାରିଖର ମଧ୍ୟରାତ୍ର । ସମସ୍ତେ ନିଦ୍ରାମଗ୍ନ; କିନ୍ତୁ ଭଗବତ୍ ଗୀତାର "ଯା ନିଶା ସର୍ବଭୂତା ନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ" ପରି ସ୍ୱାଧୀନ, ସ୍ୱାବଲମ୍ବୀ, ସଂଗ୍ରାମୀ, ସୈନିକ ଜାଗ୍ରତ ରହି ପରାଧୀନତାର ପ୍ରତୀକ "ୟୁନିଅନ ଜାକ୍"ର ଅବତରଣ କରିଛନ୍ତି ଓ ଠିକ୍ ସେହି ସ୍ଥାନରେ ସେତିକବେଳେ ଉତ୍ତୋଳନ କରାଯାଇଛି ସ୍ୱାଭିମାନ ଓ ସ୍ୱାଧୀନତାର ପ୍ରତୀକ "ତ୍ରିରଙ୍ଗା ପତାକା" । ସ୍ୱର୍ଣ୍ଣୀଙ୍କ ଜୀବନରେ ଆଶା, ଅଭିଳାଷ ଓ ଆକାଂକ୍ଷାର ଉନ୍ମେଷ ଘଟିଛି । ବାଳଗଙ୍ଗାଧର ତିଳକଙ୍କ ଘୋଷଣା "ସ୍ୱରାଜ ଆମର ଜନ୍ମଗତ ଅଧିକାର" ସତ୍ୟ ହୋଇଛି । ପଣ୍ଡିତ ନେହରୁ କହିଛନ୍ତି—"ଆମ୍ଭମାନଙ୍କ ଇତିହାସ ନୂଆ ଆରମ୍ଭ ହୋଇଛି—ଯେଉଁ ଇତିହାସରେ ଆମ୍ଭେମାନେ ବଞ୍ଚିବା, କାମ କରିବା ଓ ଅନ୍ୟମାନେ ଯାହାକୁ ଲେଖିବେ ।" ଏହି ବହୁ ଆକାଂକ୍ଷିତ ଦିବସର ପ୍ରେରଣା ଦାୟକ ଗୁରୁତ୍ୱ ବୁଝାଇବାକୁ ଯାଇ ପଣ୍ଡିତଜୀ ପୁନଶ୍ଚ ପ୍ରତିପାଦନ କରିଛନ୍ତି, ଭାରତରେ ଆମ ପାଇଁ, ସମଗ୍ର ଏସିଆ ଭୂଖଣ୍ଡ ପାଇଁ ଓ ବିଶ୍ୱପାଇଁ । ଏହା ହେଉଛି ଏକ ଯୁଗାନ୍ତକାରୀ ମୁହୂର୍ତ୍ତ । ଏକ ନବ ନକ୍ଷତ୍ର ଉଇଁ ଉଠୁଛନ୍ତି—ପ୍ରାଚ୍ୟ ଭୂଖଣ୍ଡରେ ସ୍ୱାଧୀନତାର ନକ୍ଷତ୍ର, ଏକ ନୂତନ ଆଶା ରୂପ ନେଉଛି, ଚିର ପୋଷିତ ସ୍ୱପ୍ନ ସତ୍ୟ ହେଉଛି ।

ବସ୍ତୁତଃ ଏହାହିଁ ହେଉଛି ଉନ୍ମାଦନା, ଜାତୀୟତା ଓ ଜାତୀୟ ଜୀବନର ଅଭ୍ୟୁଦୟର ଉନ୍ମାଦନା । ଏହାହିଁ ଧ୍ୱନିତ ହୋଇଛି ଶ୍ରୀ ଅରବିନ୍ଦଙ୍କ କଣ୍ଠରେ, "୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ, ସ୍ୱାଧୀନ ଭାରତର ଜନ୍ମ ଦିବସ । ଏହି ଦିବସ ଭାରତବର୍ଷ ପାଇଁ ଏକ ପୁରାତନ ଯୁଗର ଅବସାନ ଓ ଏକ ନବୀନ ଯୁଗର ଅଭ୍ୟୁତ୍‌ଥାନର ସୀମା ନିର୍ଦ୍ଧାରଣ କରିଛି । ବିଶ୍ୱରେ ମାନବ ସମାଜର ରାଜନୈତିକ, ସାମାଜିକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଭବିଷ୍ୟତ ନିର୍ମାଣରେ ଏହି ଯେଉଁ ନୂତନ ଯୁଗ ଆସିଛି, ତାହା ମଧ୍ୟରେ ଏହି ଦିବସର ଗୁରୁତ୍ୱ ଏକ ସ୍ୱାଧୀନ ଜାତି ଭାବେ ଆମେ ନିଜ ଜୀବନ ଓ କର୍ମ ଦ୍ୱାରା ବଜାୟ ରଖି ପାରିବା ।" ତେଣୁ ତାଙ୍କର ସ୍ୱପ୍ନ ହେଉଛି (୧) ଏକ ବୈପ୍ଳବିକ ଆନ୍ଦୋଳନ, ଯାହାଦ୍ୱାରା ଏକ ଅଖଣ୍ଡ ଓ

ସ୍ୱାଧୀନ ଭାରତ ଆତ୍ମପ୍ରକାଶ କରିବ ।(୨) ଏସିଆର ରାଷ୍ଟ୍ରମାନଙ୍କର ପୁନରୁତ୍‌ଥାନ ତଥା ସ୍ୱାଧୀନତା ଏବଂ ମାନବ ସଭ୍ୟତାର ବିକାଶରେ ମହାନ୍ ଏସିଆର ଅଂଶ ଗ୍ରହଣ । (୩) ମାନବ ସମାଜର ବାହ୍ୟ ଜୀବନକୁ ଅଧିକ ସୁନ୍ଦର, ଉଜ୍ଜ୍ୱଳ ଓ ଆଦର୍ଶ କରିବା ପାଇଁ ଜାତିସଂଘ ପ୍ରତିଷ୍ଠା । (୪) ବିଶ୍ୱକୁ ଭାରତର ଆଧ୍ୟାତ୍ମିକ ଦାନ ଓ (୫) ବିବର୍ତ୍ତନର ଧାରାରେ ଏପରି ଏକ ପଦକ୍ଷେପ ନେବା ଯାହା ମନୁଷ୍ୟକୁ ଏକ ଉଚ୍ଚତର ଓ ବିଶାଳତର ଚେତନାକୁ ଉନ୍ନୀତ କରିବ ଏବଂ ସେହିସବୁ ସମସ୍ୟାର ସମାଧାନ ଆଣିବ, ଯେଉଁ ସମସ୍ୟା ସକଳ ମନୁଷ୍ୟକୁ ବ୍ୟସ୍ତ ଓ ବିଚଳିତ କରିଛି, ଯେବେଠୁ ସେ ବ୍ୟକ୍ତିଗତ ପୂର୍ଣ୍ଣତା ଓ ସାମାଜିକ ପୂର୍ଣ୍ଣତା କଥା ଚିନ୍ତା କରିଛି ଓ ସ୍ୱପ୍ନ ଦେଖିଛି । ଏସବୁ ସ୍ୱପ୍ନ ସଫଳ ହୋଇଛି କି ? ଏଥିପାଇଁ ଆମର ପନ୍ଥା ଓ କାର୍ଯ୍ୟ କଅଣ ?

ସେବେଳର ପ୍ରତିଶ୍ରୁତି ଓ ଏଇ ବେଳର ପ୍ରତ୍ୟକ୍ଷୀଭୂତ ଅଭିଜ୍ଞତା ଯେ ଅଗଷ୍ଟ ପନ୍ଦର ସମ୍ଭାବନାର ଦରଜା ଖୋଲି ଦେଇଛି । ଦରଜା ଖୋଲି ଦେଶକୁ ବିଶ୍ୱ ପୃଷ୍ଠାରେ ଉଦ୍‌ଭାସିତ କରିବା ଓ ବିଶ୍ୱକୁ ଆଲୋକିତ କରିବା ଆମର କର୍ତ୍ତବ୍ୟ । କିନ୍ତୁ ଏହା ସ୍ମରଣ କରିବାର କଥା ଯେ ସମ୍ଭାବନାର ପଶ୍ଚାତ୍ ଭାଗରେ ରହିଛି ସାଧନା । ବ୍ୟକ୍ତି ଓ ଜାତିର ଜୀବନରେ ସଂଗ୍ରାମ ଓ ସାଧନା ଯୋଗୁଁ ଆମେ ସମ୍ଭାବନାର ଅଧିକାରୀ ହେଉଁ । ଉଦାହରଣ ସ୍ୱରୂପ—ଯୌବନ ହେଉଛି ସମ୍ଭାବନା ପରିପୂର୍ଣ୍ଣ ସମୟ ଓ ସେଥିପାଇଁ ବାଲ୍ୟ ଓ କିଶୋର ଜୀବନର ସାଧନା ହେଉଛି ସୋପାନ । ସେଥିପାଇଁ ଅଗଷ୍ଟ ପନ୍ଦରକୁ ସଂଗ୍ରାମର ଚରମ ସାଧନା ଓ ସମ୍ଭାବନା ଉନ୍ମେଷର ମିଳନ ପୀଠ ବୋଲି ଅଭିହିତ କରାଯାଇ ପାରେ । ଦ୍ୱିତୀୟତଃ ସମ୍ଭାବନାର ଆଗମନ ବ୍ୟକ୍ତି ହେଉ ବା ଜାତି ହେଉ, ଯେଉଁଠି ଯେତେ ଆକସ୍ମିକ ହୋଇଛି ସେଠି ଏହାର ଅପସାରଣ ସେତେ ଅପ୍ରତ୍ୟାଶିତ ହୋଇଛି । ସମ୍ଭାବନାର ସ୍ଥାୟିତ୍ୱ କ୍ଷଣିକ ହୋଇଛି । ଫଳରେ ଏହା ପୁଷ୍ପିତ ଓ ଋଦ୍ଧିମନ୍ତ ହୋଇପାରି ନାହିଁ । ସନ୍ତାନ-ଲାଭର ସମ୍ଭାବନା ଅଧିକାରୀ ଜନନୀଙ୍କୁ କଠୋର ଜଠର ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ । ଅତଏବ ଏହି ଦୁଇ ଦୃଷ୍ଟିରୁ ବିଚାର କରିବାକୁ ଗଲେ ଆମକୁ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖର ପୂର୍ବବର୍ତ୍ତୀ ସ୍ୱାଧୀନତା ସଂଗ୍ରାମର ସମୟ ଓ ଇତିହାସ ଅଧ୍ୟୟନ କରିବାକୁ ପଡ଼ିବ । ୧୯୪୭ ଅଗଷ୍ଟ ପନ୍ଦରର ପ୍ରଭାତ ପୂର୍ବକ ପାଇଁ ଚଉଦର ରାତ୍ରି ପ୍ରତ୍ୟେକ ଭାରତୀୟଙ୍କ ମନରେ କିପରି ଆଶା ନିରାଶା ମଧ୍ୟରେ ଘଣ୍ଟାର ପେଣ୍ଡୁଲମ୍ ଦୋଦୁଲ୍ୟମାନ ହୋଇଥିବ, ତାହା ଅନୁଭବ କରିବାକୁ ହେବ । ଏହି ସଂଗ୍ରାମର ଅନୁଭୂତି ଯେତେ ତୀବ୍ର ହେବ, ସଂଗ୍ରାମ ପ୍ରସୂତ ସମ୍ଭାବନାକୁ ସୁଫଳାୟିତ ଦିଗରେ କାର୍ଯ୍ୟକାରୀ କରିବା ପାଇଁ ସାମର୍ଥ୍ୟ ଓ ଶକ୍ତିର ସଞ୍ଚାର କରାଯାଇପାରିବ ।

ଏହି ଦୃଷ୍ଟିରୁ ଆମ ସ୍ୱାଧୀନତା ସଂଗ୍ରାମର କେତୋଟି ଉଲ୍ଲେଖନୀୟ ଦିଗ ବିଷୟରେ ବିଚାର କଲେ ସର୍ବାଦୌ ସଂଗ୍ରାମର ପ୍ରକୃତି କଥା ମନକୁ ଆସେ । ଏହା ଏକ ଅହିଂସା ଲଢ଼ାଇ । ଏହି ଯୁଦ୍ଧରେ ରକ୍ତପାତ ନାହିଁ ଓ ଅସ୍ତ୍ରଶସ୍ତ୍ରର କାରବାର ନାହିଁ ।

ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ରଣ କୌଶଳ ଭାବରେ ସତ୍ୟ ଓ ଅହିଂସା ଆଧାରିତ ସତ୍ୟାଗ୍ରହକୁ ଗ୍ରହଣ କରାଯାଇଥିଲା । ଏହା ବିଶ୍ୱ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅନନ୍ୟସାଧାରଣ ଏବଂ ଆଜି ଜାତୀୟ ତଥା ଆନ୍ତର୍ଜାତିକ ଦ୍ୱନ୍ଦ୍ୱର ସମାଧାନ ପାଇଁ ସ୍ଥାୟୀ ପ୍ରଣାଳୀ ଭାବରେ ଗୃହୀତ । ସତ୍ୟାଗ୍ରହୀ ସର୍ବଦା ଶାନ୍ତ ଓ ସତ୍ୟ ଆଚରଣକରି କୌଣସି ପରିଣତି ପ୍ରତି ଭ୍ରୂକ୍ଷେପ ନକରି ଅନ୍ୟାୟ ନିକଟରେ ମୁଣ୍ଡ ନୁଆଁଇବେ ନାହିଁ । ପାପ ବିରୁଦ୍ଧରେ ସଂଗ୍ରାମ କରି ପାପୀକୁ ସ୍ନେହ କରିବେ । ଘୃଣାର ସ୍ଥାନ ସତ୍ୟାଗ୍ରହୀର ଜୀବନକୋଷରେ ନାହିଁ । ଗାନ୍ଧିଙ୍କ ଦୃଷ୍ଟିରେ ଅହିଂସା ଦୁର୍ବଳ ଓ କାପୁରୁଷର ଅସ୍ତ୍ର ନୁହେଁ; ବରଂ କେବଳ ବଳବାନ୍ ଓ ସାହସୀର ଆୟୁଧ । ଗାନ୍ଧିଙ୍କ ନେତୃତ୍ୱରେ ପରିଚାଳିତ ଦୀର୍ଘ ୨୭ବର୍ଷର ସଂଗ୍ରାମରେ ଏହାହିଁ ଥିଲା ବୈଶିଷ୍ଟ୍ୟ ।

୧୮୮୫ ମସିହାରେ ସଂଗଠିତ ହୁଏ ଭାରତୀୟ ଜାତୀୟ କଂଗ୍ରେସ । ଏହା ସ୍ୱାଧୀନତା ସଂଗ୍ରାମରେ ଏକ ଶତାବ୍ଦୀରୁ ଏକ ଦଶନ୍ଧି କମ୍ ସମୟରେ ଅହିଂସ ବିପ୍ଳବ ନିରବଚ୍ଛିନ୍ନ ଭାବରେ କରିଆସିଛି । କଂଗ୍ରେସର ଉନ୍ମେଷ କାଳରେ କେତେକ ଉଚ୍ଚ ଶିକ୍ଷିତ ଦୂରଦ୍ରଷ୍ଟା ବୁଦ୍ଧିଜୀବୀଙ୍କ ପ୍ରଚେଷ୍ଟାରେ ବ୍ରିଟିଶ ଶାସନ ଭାରତୀୟମାନଙ୍କ ବିରୁଦ୍ଧରେ ଯେଉଁ ଅନ୍ୟାୟ, ଅତ୍ୟାଚାର ଓ ଅବିଚାର କରୁଥିଲା ତା'ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇଥିଲା । ସେମାନଙ୍କର କୌଣସି ସ୍ୱାର୍ଥ ନଥିଲା; ବରଂ ସେମାନେ ନିଜର ପ୍ରାଣଦାନ କରିବାକୁ ପ୍ରସ୍ତୁତ ଥିଲେ । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ପଛରେ ରହିଛି ପ୍ରାୟ ଏକ ଶତାବ୍ଦୀର ନୈତିକ ଶୃଙ୍ଖଳା, ଆତ୍ମତ୍ୟାଗ ଓ ବଳିଦାନ । ଏହା ସମଗ୍ର ପୃଥିବୀରେ ବିରଳ । "ଯେଉଁଠି ତ୍ୟାଗ, ଆତ୍ମଦାନ, ବଳିଦାନ ଅଛି; ସେଠି ମୃତ୍ୟୁ ନାହିଁ, ମୃତ୍ୟୁର ଭୟ ବି ନାହିଁ ।"

ଆହୁରି ମଧ୍ୟ ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏହା କେବେହେଁ ଏକ ବ୍ୟକ୍ତିକୈନ୍ଦ୍ରିକ ଉଦ୍ୟମ ହୋଇ ନାହିଁ; ବରଂ ସମୟର ସ୍ରୋତରେ ଏହା କ୍ରମେ ବିଶେଷକରି ମହାତ୍ମା ଗାନ୍ଧିଙ୍କ ଆଧ୍ୟାତ୍ମିକ ନେତୃତ୍ୱରେ ଏକ ଗଣ ଆନ୍ଦୋଳନର ରୂପ ନେଇଛି । ୧୯୨୧ ମସିହାରେ ସର୍ବସାଧାରଣ ଆଇନ୍ ଅମାନ୍ୟ ଅଭିଯାନ ଆରମ୍ଭ କରାଯାଇଛି । ସମଗ୍ର ଭାରତକୁ ଅସହଯୋଗର ଡାକରା ଦିଆଯାଇଛି । ଛାତ୍ର, ଯୁବକ ଓ ସାଧାରଣ ଲୋକ ସ୍କୁଲ କଲେଜ, ବୃତ୍ତି ବ୍ୟବସାୟ ଛାଡ଼ି ହଜାରହଜାର ସଂଖ୍ୟାରେ ଝାସ ଦେଇଛନ୍ତି । ଭାଷା, ଜାତି, ଧର୍ମ, ଧନ, ଗ୍ରାମ, ସହର ଆଦି ନିର୍ବିଶେଷରେ ସବୁଶ୍ରେଣୀର ନରନାରୀ ପ୍ରତ୍ୟକ୍ଷ ବା ପରୋକ୍ଷରେ ସ୍ୱେଚ୍ଛାକୃତ ସମର୍ଥନ ଯଥାଶକ୍ତି ଅଜାଡ଼ି ଦେଇଛନ୍ତି । ଏହି ନିରବ ଅହିଂସା ବିପ୍ଳବରେ କୃଷକ, ଶ୍ରମିକ, ଦରିଦ୍ରତମ ଲୋକ ଯୋଗଦେବାରୁ ବିପ୍ଳବର ବନ୍ୟା ସମଗ୍ର ଦେଶରେ ମାଡ଼ିଗଲା ।

"ବଲମ ଅପେକ୍ଷା କଲମ ଯେ ଅଧିକ ଶକ୍ତିଶାଳୀ"—ଏହା ପ୍ରମାଣିତ ହେଲା ଓ ଏହି ବିପ୍ଳବର ବହ୍ନିକୁ ପ୍ରତ୍ୟେକ ହୃଦୟରେ ଜାଳି ଗଣଚେତନା ସୃଷ୍ଟି କରାଗଲା । ତିଲକ, ପ୍ରେମଚାନ୍ଦ, ବଙ୍କିମଚନ୍ଦ୍ର, ଗୋପବନ୍ଧୁ ପ୍ରମୁଖ ସ୍ୱଦେଶବତ୍ସଳ ଜାତୀୟ

ମନୀଷୀଗଣଙ୍କ ଦୃଷ୍ଟାନ୍ତ ସ୍ମରଣୀୟ । ଶିବାଜୀଙ୍କ ଉତ୍ସାହ ବାଣୀପରି କବିତା ବିଭିନ୍ନ ଭାଷାରେ ଭାରତର ପ୍ରତ୍ୟେକ କୋଣରେ ରଚନା କରାଯାଇ ପ୍ରତ୍ୟକ୍ଷ ବା ପରୋକ୍ଷ ଇନ୍ଧନ ଯୋଗାଇଦେଲା ।

ଆମ ଦେଶର ପରିପ୍ରେକ୍ଷୀରେ ସ୍ୱାଧୀନତା ସଂଗ୍ରାମର ଉଦ୍ଦେଶ୍ୟ ଓ ଉପାୟ ଦୃଷ୍ଟିରୁ ସ୍ୱାତନ୍ତ୍ର୍ୟ ଓ ଗୁରୁତ୍ୱ ରହିଛି । ରାଜନୈତିକ ସ୍ୱାଧୀନତା ଯେ ଅର୍ଥନୈତିକ ଓ ସାମାଜିକ ସ୍ୱାଧୀନତାର ଦ୍ୱାର ଉନ୍ମୁକ୍ତ କରିଦେବ, ସେଥିପାଇଁ ଏହି ଆନ୍ଦୋଳନର ଅନ୍ୟ ଏକ ଦିଗ ଭାଗରେ ପରୀକ୍ଷା ନିରୀକ୍ଷା ଓ ବିଚାର କରାଯାଇଥିଲା । ଶୋଷଣ, କଷଣ, ବାଦ, ଛନ୍ଦ, ସଙ୍କୀର୍ଣ୍ଣତା, କୁସଂସ୍କାର ଆଦିରୁ ଆମେ ରକ୍ଷାପାଇ ବିମୁକ୍ତ ମାନବ ହେବା । ଏସବୁ ସହିତ ଭାରତରେ ତଥା ବିଶ୍ୱରେ କ୍ଷିପ୍ରଗତିରେ ତେଜି ଉଠୁଥିବା ଫାସିବାଦ, ସାମ୍ରାଜ୍ୟବାଦ ଓ ଉପନିବେଶବାଦର ଏକ ବିପରୀତ ପ୍ରତିଷେଧ (ଆଣ୍ଟିଥେସିସ୍) ଭାବରେ ଆମ ସଂଗ୍ରାମକୁ ଶାଣିତ କରାଯାଇଥିଲା ।

ଆହୁରି ମଧ୍ୟ ଏହା ଉଲ୍ଲେଖନୀୟ ଯେ ମୁକ୍ତିର ଜ୍ୱାଳା ସଂକ୍ରାମକ । ଆଫ୍ରିକା ଓ ଏସିଆ ଭୂଖଣ୍ଡର ଜନଜାଗରଣର ଲକ୍ଷଣିକ ଭାବରେ ଉକ୍ତ ପରିପ୍ରେକ୍ଷୀରେ ଏହି ଯୁଗାନ୍ତକାରୀ ଆନ୍ଦୋଳନର ଭୂମିକାକୁ ବିଚାର କରାଯାଇପାରେ । ଏହି ଐତିହାସିକ ସଂଗ୍ରାମରେ ଆନ୍ତର୍ଦେଶୀୟ ସାଂସ୍କୃତିକ ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ ହୁଏ । ଫରାସୀ ରାଷ୍ଟ୍ର ବିପ୍ଳବ, ଆମେରିକାର ମୁକ୍ତିସଂଗ୍ରାମ, ଇଟାଲୀର ସମ୍ମିଶ୍ରଣ ଆଦିର ପଦଧ୍ୱନି ଆମ ଜନନାୟକଙ୍କ କର୍ଣ୍ଣଗୋଚର ହୋଇଛି । ରୁଷ ବିପ୍ଳବ (୧୯୧୭) ଫଳରେ ଯେଉଁ ଆତ୍ମମୁକ୍ତିର ଅଗ୍ନିଜ୍ୱାଳା ଉଦ୍‌ଗିରଣ ଘଟିଛି, ତାହାର ପ୍ରତିଧ୍ୱନି ଆମ ସଂଗ୍ରାମୀ ବାୟୁମଣ୍ଡଳରେ ବ୍ୟାପିଯାଇଛି । ମୋଟାମୋଟିଭାବରେ ଦେଖିବାକୁ ଗଲେ ବିଶ୍ୱ ପ୍ରରିପ୍ରେକ୍ଷୀରେ ଯୁଗଚେତନାର ପ୍ରଭାବ ପଡ଼ିଛି, କିନ୍ତୁ ଆମେ ଏହାକୁ ଆମ ନିଜ ପ୍ରତିଭା ଓ ପରମ୍ପରାରେ ରୂପାୟିତ କରିଛୁଁ । ଏଥିରେ ମହାତ୍ମା ଗାନ୍ଧିଙ୍କର ନିଜସ୍ୱ ଚିନ୍ତା ନିହିତ ରହିଛି ।

ଚିନ୍ତା ଓ କାର୍ଯ୍ୟ ମଧ୍ୟରେ ସମନ୍ୱୟ ହେଉଛି ସତ୍ୟାଗ୍ରହୀ ଅହିଂସ ସଂଗ୍ରାମର ସ୍ୱଧର୍ମ । ଏହାହିଁ ଗାନ୍ଧିଜୀଙ୍କର ବଳିଷ୍ଠ ଚିନ୍ତା ଓ ସାହସିକ ପ୍ରୟୋଗ । ତଦ୍ୱାରା ସେ ନିରୀହ ଜନତାଙ୍କ ପ୍ରାଣସଂଚାର କରିଥିଲେ ଓ ମୌଳିକ ପରିବର୍ତ୍ତନ ମନୋଜ୍ଞଭାବରେ କରାଇଥିଲେ । ଧାର୍ମିକ, ଜାତିସଂକ୍ରାନ୍ତ ଓ ଭାଷାଗତ ବୁଝାମଣା ସୃଷ୍ଟିକରି ଜାତୀୟ ଏକତାର ମନ୍ତ୍ର ଦେଲେ । ଏଥିପାଇଁ ଆତ୍ମଶୁଦ୍ଧି, ଚରିତ୍ରବତ୍ତା ଓ ସଂଯମକୁ ନିଜ ଜୀବନଧାରାର ଅଙ୍ଗୀଭୂତକରି ସମଗ୍ର ଦେଶପାଇଁ ଏହି ଆଦର୍ଶକୁ ସ୍ୱାଧୀନତା ସାଧନର ଓ ତତ୍‌ପରବର୍ତ୍ତୀ କାଳରେ ଦେଶ ନିର୍ମାଣର ଆୟୁଧ କଲେ ।

ଆମ୍ଭେମାନେ ୧୯୪୭ ଅଗଷ୍ଟ ପନ୍ଦରର ଜୟନ୍ତୀ ପାଳନ କରୁଛୁ ଓ କରିବୁ । ସେତେବେଳେ ଯାହା ଶପଥ ଓ ସମ୍ଭାବନା ଥିଲା ଓ ଯାହାର ପଦଧ୍ୱନି ପ୍ରତି ମୁହୂର୍ତ୍ତ ଆମେ

ଶୁଣିବାର କଥା, ତାହା କାୟମନୋବାକ୍ୟରେ ବ୍ୟକ୍ତି ଏବଂ ସମଷ୍ଟି ସ୍ତରରେ ଜୀବନ ଯାପନର ଧାରା ହୋଇ ରହିବା ଉଚିତ ଓ ତାହାର ଆତ୍ମବିଶ୍ଳେଷଣ ହେବା ଉଚିତ । ହିଂସା-ପ୍ରଣୋଦିତ ବିଚ୍ଛିନ୍ନତାବାଦୀ ମନୋଭାବ ଉତ୍କଟ ରୂପ ପ୍ରକାଶ କରୁଛି । ଅହମିକାଗ୍ରସ୍ତ କ୍ଷମତା-ଲିପ୍ସା ବ୍ୟକ୍ତି ସ୍ୱାର୍ଥସାଧନରେ ଆୟୁଧ ହେବାକୁ ଲାଗିଛି—ସେଠି ଦେଶ ବଞ୍ଚିବ କିପରି ? ଧନବଳ, ବାହୁବଳ ଓ ଜନବଳକୁ ଆମେ କାବୁକରି ଧରିଛୁ । ସେଠି ଦେଶ ବଞ୍ଚିବ କାହିଁ ? ଆତ୍ମବଳ ଓ ଲୋକଶକ୍ତି ପ୍ରତ୍ୟେକ ନାଗରିକଙ୍କର କେତେ ବଢ଼ିଛି ? ଏହା ଭିତରେ ଆମେ ଆମ ଶତ୍ରୁକୁ ଆବିଷ୍କାର କରି ନେଇଛୁଁ ଓ ସେ ହେଉଛନ୍ତି "ଆମେ" । ସବୁ କିଛି କରି-ଦେବାର ଅହମିକା ଜଣେ ବ୍ୟକ୍ତି ବା ମୁଷ୍ଟିମେୟ ଲୋକ କରି ପାରନ୍ତି କି ? ତେବେ ଆମ ସ୍ୱାଧୀନତା ଆନ୍ଦୋଳନ ଏକ ଗଣ କାର୍ଯ୍ୟକ୍ରମ ହେଲା କାହିଁକି ? ପରିବାରରୁ ପାଠଶାଳାରୁ ଓ ପଲ୍ଲୀ ଅଞ୍ଚଳରୁ ଗଣତନ୍ତ୍ର, ସମାଜବାଦ ଓ ଧର୍ମନିରପେକ୍ଷତା ଆରମ୍ଭ କରିବା ଉଚିତ । ସ୍ୱାତନ୍ତ୍ର୍ୟବୋଧର ଉନ୍ମେଷ ପ୍ରତିଟି ହୃଦୟ କନ୍ଦରରୁ ଜନ୍ମିବା ଉଚିତ । ବର୍ତ୍ତମାନ କେତୋଟି ନିର୍ଦ୍ଦିଷ୍ଟ କର୍ମପନ୍ଥାର ସୂଚନା ଦିଆଯାଇପାରେ ।

(୧) ଆତ୍ମତ୍ୟାଗ ଓ ସେବା ମନୋଭାବର ଉଦ୍ରେକ କରାଯିବ । ବାଘାଯତୀନ୍, ଭଗତ୍ ସିଂ, ଖୁଦିରାମ ପ୍ରଭୃତି ଶହୀଦ୍‌ମାନେ କେଉଁ ଅବସ୍ଥାରେ ଓ କାହିଁକି ଆତ୍ମବଳି ଦେଇ ଅମର ହୋଇଛନ୍ତି ?—ଏହାର ଏକ ଜୀବନ୍ତ ଉପସ୍ଥାପନ ଗଣମାଧ୍ୟମ ସାହାଯ୍ୟରେ କରାଯିବ । ସମଗ୍ର ସମାଜରେ ଏହାର ଆଦରକୁ ବୃଦ୍ଧି କରିବା ଦିଗରେ କାର୍ଯ୍ୟ କରାଯିବ । ଆମ ପରିସରରେ ଏ ପ୍ରକାର ଲୋକଙ୍କୁ ଠାବକରି ଆଦର୍ଶ ରୂପେ ଗ୍ରହଣ କରିବା ଉଚିତ ।

(୨) ପକ୍ଷାନ୍ତରରେ ଆତ୍ମକୈନ୍ଦ୍ରିକ ଜୀବନ ଆଧୁନିକ ଜଗତରେ ଅନାବଶ୍ୟକ ଓ ଅବାଞ୍ଛନୀୟ । ଏହାର ପରିଣତି ବ୍ୟକ୍ତି, ସମାଜ, ଦେଶ ଓ ବିଶ୍ୱ ପାଇଁ ଭୟାବହ—ଏହା ସମସ୍ତେ ହୃଦୟଙ୍ଗମ କରିବା ଉଚିତ । ଗୀତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥରୁ ଉଦ୍ଧାର କରାଯାଇ ସମାଜରେ ଚେତନା ସୃଷ୍ଟି କରାଯିବ । ସର୍ବଜନହିତୈଷିତା—ହେଉଛି ଜୀବନର ସାର୍ଥକତା ।

(୩) ସମସ୍ତ ସାମାଜିକ ଓ ବିକାଶ କାର୍ଯ୍ୟକ୍ରମରେ ଜନଶକ୍ତି ଓ ଜନ ସହଯୋଗ ଉପରେ ଗୁରୁତ୍ୱ ଆରୋପ କରାଯିବ । ଯୋଜନାରେ ଏଥିପ୍ରତି ଦୃଷ୍ଟି ରହିବ ।

(୪) ସ୍ୱାଧୀନତା ସଂଗ୍ରାମରେ ସବୁଶ୍ରେଣୀର ଲୋକ ଓତପ୍ରୋତ ଜଡ଼ିତ ରହି ଗୋଟିଏ ବଳିଷ୍ଠ ଆବେଗିକ ବାୟୁମଣ୍ଡଳ ସୃଷ୍ଟି କରାଯାଇଥିଲା । ଠିକ୍ ସେହିପରି ବିକାଶର ବନ୍ୟାରେ ସମଗ୍ର ଦେଶ ସମ ଭାଗରେ ଜଡ଼ିତ ରହି ବିକାଶର ସ୍ରୋତ ଅବିରତ ଭାବରେ ସମସ୍ତଙ୍କୁ ସ୍ପର୍ଶ କରିବା ଉଚିତ ।

(୫) ପରିବାର, ଗୋଷ୍ଠୀ, ଦେଶ ତଥା ବିଶ୍ୱର ସମସ୍ୟା ସମାଧାନରେ ଅହିଂସା, ସତ୍ୟ ଓ ପ୍ରେମର ସଫଳ ତଥା ସାର୍ବକାଳୀନ ପ୍ରୟୋଗ ସମ୍ବନ୍ଧରେ ଗବେଷଣା ଓ ଉଦ୍ୟମ କରାଯିବ ।

(୬) ଯୁବ ଅଶାନ୍ତିକୁ ସାମାଜିକ କଳଙ୍କ ଓ କୁସଂସ୍କାର ବିରୁଦ୍ଧରେ ନୂତନ ମୋଡ଼ ଦେବାକୁ ପଡ଼ିବ । ସାମାଜିକ ନ୍ୟାୟ ଓ ସମତାର ବିକାଶରେ ଯୁବଶକ୍ତି ନିୟୋଜିତ ହେବା ଉଚିତ ।

(୭) ସମାଜ ସେବକ ଓ ସଂସ୍କାରକମାନଙ୍କୁ ଅଧିକରୁ ଅଧିକ ସ୍ୱୀକୃତି ଦିଆଯିବ । ଆମ୍ଭମାନଙ୍କ ମଧ୍ୟରେ ସାନ, ସାନ ଲୋକ ଲୁଚିଛପି ଅଛନ୍ତି; କିନ୍ତୁ ସେମାନଙ୍କ ତ୍ୟାଗ, ଆତ୍ମୋତ୍ସର୍ଗ ଓ ପରାର୍ଥପରତା ନିଜ ପରିସର ମଧ୍ୟରେ ପରିବ୍ୟାପ୍ତ । ସେମାନଙ୍କୁ ଚିହ୍ନି ଲୋକ-ଲୋଚନକୁ ଆଣି ପାରିଲେ ସେମାନେ ଶ୍ମଶାନ ତୁଳସୀ ହୋଇ ରହିବେ ନାହିଁ, ଅଥଚ ପ୍ରତିବେଶୀମାନଙ୍କୁ ପ୍ରେରଣା ଦିଅନ୍ତେ ।

(୮) ଆମ ସମ୍ବିଧାନର ଲକ୍ଷ୍ୟ, ଅର୍ଥାତ୍ ସମାଜବାଦ, ଧର୍ମନିରପେକ୍ଷତା ଓ ଗଣତନ୍ତ୍ର ଅନୁସାରେ ଆମ ପରିବାର, ପାଠଶାଳା, ଗୋଷ୍ଠୀ ଓ ଦେଶକୁ ନିର୍ମାଣ କରିବାର ଉଦ୍ୟମ ଅବ୍ୟାହତ ରହନ୍ତୁ ।

(୯) ମୂଲ୍ୟବୋଧର କ୍ରମ ଅବକ୍ଷୟ କାହାରିକୁ ଅଜଣା ନୁହେଁ, ବରଂ ଆମ ଭାଷଣ, ପ୍ରବଚନ ଓ କଥୋପକଥନକୁ ବେଶ୍ ରସାଣିତ କରୁଛି । କିନ୍ତୁ ଆମ ଶିକ୍ଷା, ସମାଜ ରଚନା, ଯୋଜନା ଆଦି ସର୍ବବିଧ ପ୍ରକଳ୍ପରେ ସବିଶେଷ ଭାବରେ ମୂଲ୍ୟବୋଧର ଉଚିତ ବିକାଶ ତଥା ସୁରକ୍ଷା ସ୍ଥାନ ପାଇବା ଉଚିତ ।

(୧୦) ସ୍ୱାଧୀନତା ସଂଗ୍ରାମ ସମୟର ମର୍ମସ୍ପର୍ଶୀ ଓ ରୋମାଞ୍ଚକାରୀ ଲେଖା ଓ କାହାଣୀ ସମସ୍ତଙ୍କ ଦୃଷ୍ଟିକୁ ଆସିବା ଉଚିତ । ଶିକ୍ଷାର ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ଭୂମିକାରେ ଏସବୁ ଲେଖା ସାବଲୀଳ ହେବ ।

(୧୧) ଜାତୀୟ ପତାକା, ଜାତୀୟ ସଙ୍ଗୀତ ଓ ଜାତୀୟ ସଙ୍କେତ ସମସ୍ତ ଭାରତୀୟଙ୍କୁ ମମତାର ଡୋରରେ ବାନ୍ଧି ରଖିଛି । ଏହାର ପଛରେ ଅଛି ଯୁଗ-ଯୁଗର ଇତିହାସ, ପ୍ରାଚ୍ୟ ପରମ୍ପରା ଓ ଆତ୍ମତ୍ୟାଗର ମହନୀୟତା । ଏଥିପ୍ରତି ସମ୍ମାନ ଓ ଏହାର ସୁରକ୍ଷା ପାଇଁ କର୍ତ୍ତବ୍ୟ-ନିଷ୍ଠାର ପ୍ରତିଜ୍ଞା ସର୍ବକାଳରେ ପ୍ରକାଶ ପାଇବ । ଏ ଦିଗରେ ଅସ୍ଥିରତା ଓ ସହନଶୀଳତାର ଅଭାବ ଅକ୍ଷମଣୀୟ । ଏହି ଜାତୀୟ ସଙ୍କେତ ଗୁଡ଼ିକର ତାତ୍ପର୍ଯ୍ୟ ଆମେ ବୁଝିବା ଓ ପାଳନ କରିବା ।

ପରିଶେଷରେ ମହନୀୟ ପନ୍ଦରର ପଦଧ୍ୱନି ଶୁଣୁ ଶୁଣୁ ଗାନ୍ଧିଙ୍କ ଉକ୍ତିକୁ ସ୍ମରଣ କରିବା, "ମୋର—ମୋର ଏକା କାହିଁକି ଆମ ସମସ୍ତଙ୍କ ସ୍ୱପ୍ନର ସ୍ୱରାଜରେ ଜାତି କିମ୍ବା ଧର୍ମଗତ ଭେଦଭାବ ରହିବ ନାହିଁ । ଏହା ଶିକ୍ଷିତ କିମ୍ବା ଧନୀ ବ୍ୟକ୍ତିମାନଙ୍କ ଏକଚାଟିଆ ଅଧିକାର ହୋଇ ରହିବ ନାହିଁ । ସ୍ୱରାଜ ସମସ୍ତଙ୍କର । ଏଥିରେ କୃଷକ, ଧନୀ, ନିର୍ଦ୍ଧନ, ଅନ୍ଧ ଓ କୋଟି କୋଟି ଭୋକିଲା ଲୋକଙ୍କ ସ୍ଥାନ ରହିଛି ।"

---

# ଭାରତ ପଙ୍କଜ ଦଳମିବ ଉତ୍କଳଂ

ସମତାଳରେ ଉଚ୍ଛ୍ୱଳିତ ସ୍ୱରର ଲହରୀ ଚୂଡ଼ାରେ ଭାସି ଆସୁଅଛି "ଭାରତମେବ ନମାମଃ, ଭାରତମେବ ନମାମଃ— ।" 'ଭାରତମେକା ଗତିରସ୍ମାକମ୍' । ଏହି ସ୍ୱୀକୃତି ମିଳୁଛି କେବଳ ସଙ୍ଗୀତର ଆବେଗମୟୀ ମୂର୍ଚ୍ଛନାରୁ ନୁହେଁ, ଏକ ସୁଦୂର ଅତୀତର ଅନ୍ତଃଚେତନା ଓ ଦିବ୍ୟଦ୍ରଷ୍ଟା କବିମାନସର ଭାବୀ ଉଦ୍ଧରଣରୁ, ସେ ସମ୍ବୋଧନ କରୁଛନ୍ତି—

ସର୍ବେଷାଂ ନୋ ଜନନୀ ଭାରତ ଧରଣୀକଳ୍ପଲତେୟମ୍...

ଭାରତ ସ୍ୱାଧୀନତା ସଂଗ୍ରାମର ମୂଳମନ୍ତ୍ର ଥିଲା "ବନ୍ଦେ ମାତରଂ"—୧୮୮୨ ମସିହାରେ କଥା-ସମ୍ରାଟ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ "ଆନନ୍ଦମଠର" ଏକ ସଂଗୀତ । ତଦ୍ଦ୍ୱାରା ସଂଗ୍ରାମୀ ଓ ସଂଗ୍ରାମର ଆବଶ୍ୟକତା ଓ ଉଦ୍‌ବୋଧନ ଏପରି ମର୍ମସ୍ପର୍ଶୀ ହେଲା ଯେ, ୧୮୯୬ର ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଏହା ଗାନ କରାଯାଇଥିଲା । କବିଙ୍କର କାଳଜୟୀ ଆନନ୍ଦମଠର ବିପ୍ଳବୀ ସନ୍ନ୍ୟାସୀ ଭବାନନ୍ଦଙ୍କ ମୁଖରେ ପ୍ରକାଶ ପାଇଛି । ମାତୃଭୂମି ହିଁ ଏକମାତ୍ର ମା'; ଆମର ଅନ୍ୟ ମା' ନାହିଁ, ବାପା ନାହିଁ, ବନ୍ଧୁ ନାହିଁ, ପତ୍ନୀ ନାହିଁ, ପୁତ୍ର ନାହିଁ କିମ୍ବା ଗୃହ ନାହିଁ, ତେଣୁ "ବନ୍ଦେ ମାତରଂ" । ଏହାପରେ ୧୯୧୧ ଡିସେମ୍ବର ୨୭ ତାରିଖ ଜାତୀୟ କଂଗ୍ରେସ କଲିକତା ଅଧିବେଶନରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ "ଜନ-ଗଣ-ମନ ଅଧିନାୟକ ଜୟ ହେ" ସଂଗୀତ "ବନ୍ଦେ ମାତରଂ" ସହିତ ଗାନ କରାଯାଇ ସେ ଦିନରୁ ଏହି ଦୁଇଟି ଜାତୀୟ ସଂଗୀତର ସ୍ୱୀକୃତି ପାଇଛି । ପ୍ରାୟ ସମସାମୟିକ ଭାବରେ ଅର୍ଥାତ୍ ୧୯୦୩ ମସିହାରେ ରଚନା କରାଯାଇ 'ଭାରତ ବନ୍ଦନା' ଉତ୍କଳ ସମ୍ମିଳନୀ ପୀଠରେ ଗାନ କରାଯାଇଛି—"ସର୍ବେଷାଂ ନୋ ଜନନୀ ଭାରତ" ଓ ଭାରତକୁ ଆଜିର ଜାତୀୟ ପୁଷ୍ପ ପଙ୍କଜ ସଙ୍ଗେ ତୁଳନା କରି ଉତ୍କଳ ଏହାର ମାତ୍ର ଏକ ଦଳରୂପେ ଆଖ୍ୟାୟିତ କରାଯାଇଛି । ଉତ୍କଳ ସମ୍ମିଳନୀ କାହିଁକି ଓ କାହାପାଇଁ ଶକ୍ତିର ଏହି ସଂଗୀତର ସର୍ବଜନୀୟତା ଓ ପ୍ରାସଙ୍ଗିକତା ସ୍ପଷ୍ଟ କରିଦିଏ । ମାତ୍ର ବୁଝି ହୁଏ ନାହିଁ, କବିବର ରାଧାନାଥଙ୍କର ଏହି ସଂସ୍କୃତ ସଙ୍ଗୀତ ଭାରତର ଅନ୍ୟତମ ବା ଏକମାତ୍ର ଜାତୀୟ ସଙ୍ଗୀତ ହେବ ନାହିଁ କାହିଁକି ?

ଉତ୍କଳୀୟ ଜୀବନର ସମ୍ପୂର୍ଣ୍ଣ ଓ ସର୍ବୋତ୍ତମ ପରପ୍ରକାଶ ହେଉଛି ଉତ୍କଳ ସମ୍ମିଳନୀର ଘୋଷିତ ମନ୍ତ୍ର । ଅତୀତର ଗୌରବରୁ ସ୍ୱାଭିମାନର ଜନ୍ମ, ସାଂପ୍ରତିକ

ଚେତନାରେ ଏହା ପରପୁଷ୍ଟ ଓ ଭବିଷ୍ୟତ ପାଇଁ ଏହା ଏକ ଆଲୋକ ସ୍ତମ୍ଭ । ୧୯୧୩ ମସିହାରେ ପୁରୀଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଯୋଗ ଦେଇଥିଲେ—ଅନ୍ୟମାନଙ୍କ ମଧ୍ୟରେ ବ୍ୟାସକବି ଫକୀର ମୋହନ, କନିକାର ରାଜାସାହେବ ରାଜେନ୍ଦ୍ର ନାରାୟଣ ଓ ବ୍ରଜସୁନ୍ଦର ଦାସ । ସଭାପତି କୁଳବୃଦ୍ଧ ମଧୁସୂଦନଙ୍କର ଐତିହାସିକ ଅଭିଭାଷଣରେ ସେ ସ୍ପଷ୍ଟ କରି ଦେଇଥିଲେ......"ଯେଉଁ ଅର୍ଥରେ ଇଂରେଜ ଜାତି, ଜାପାନୀ ଜାତି, ବଙ୍ଗାଳୀ ଜାତି ଏହି ଶବ୍ଦମାନ ଆମ୍ଭେମାନେ ବ୍ୟବହାର କରିଥାଉଁ, ସେହି ଅର୍ଥରେ ମୁଁ ଜାତି ଶବ୍ଦ ବ୍ୟବହାର କରୁଅଛି । ଉତ୍କଳ ଜାତିର ଅର୍ଥ, ଯେଉଁମାନେ ଆପଣାକୁ ଉତ୍କଳ ସନ୍ତାନ ବୋଲି ମନେକରନ୍ତି ଏବଂ ଉତ୍କଳର ଅତୀତ ଗୌରବରେ ଯେଉଁମାନେ ଆପଣାକୁ ଗୌରବାନ୍ୱିତ ମନେକରନ୍ତି ଓ ଭାବି ଗୌରବକୁ ଆକାଂକ୍ଷା କରନ୍ତି, ସେମାନଙ୍କୁ ମୁଁ ଉତ୍କଳ ଜାତି ବୋଲି ଜ୍ଞାନ କରେ ।" ......"ମୁଁ ଉତ୍କଳ ମାତାର ସନ୍ତାନ ଏବଂ ଉତ୍କଳ ଭୂମିରେ ଯେଉଁମାନେ ଜନ୍ମଗ୍ରହଣ କରିଅଛନ୍ତି ଓ ଯେଉଁମାନେ ମରଣାନ୍ତେ ତାଙ୍କର ମୃତ ଦେହକୁ ଉତ୍କଳ ମାତାର କୋଡ଼ରେ ଅର୍ପଣ କରିବାକୁ ଇଚ୍ଛାକରନ୍ତି, ସେମାନେ ଯେଉଁ ଜାତି ହୁଅନ୍ତୁ, କି ବଙ୍ଗାଳୀ, କି ମୁସଲମାନ, କି ବ୍ରାହ୍ମଣ, କି କରଣ, କି ପାଣ, କି ପଞ୍ଜାବୀ, କି ମାନ୍ଦ୍ରାଜୀ ଏ ସମସ୍ତେ ଉତ୍କଳ ସନ୍ତାନ । ଯେ ଉତ୍କଳ ମାତାର କୋଡ଼ରେ ଜନ୍ମ ଗ୍ରହଣ କରିଅଛି ଏବଂ ଯେ ବିଶ୍ୱାସ କରେ କି ମୃତ୍ୟୁ ପରେ ଦୁର୍ଗନ୍ଧ ହେତୁ ତାହାର ମୃତ ଦେହକୁ ଜନ୍ମ ଦେଇଥିବା ମାତା ଘରୁ ବାହାର କରିଦେଲେ, ସେହି ଦୁର୍ଗନ୍ଧ ଶରୀରକୁ ଉତ୍କଳ ମାତା ଆପଣାର କୋଡ଼ରେ ଗ୍ରହଣ କରିବେ, ସେହି ହେଉଛି ଉତ୍କଳ ସନ୍ତାନ ।' (ସମାଜ ବିଶେଷାଙ୍କ, ୧୦-୭-୧୩) ।

ଅନ୍ୟ ଏକ ମହାନୁଭବ ବ୍ୟକ୍ତିତ ଅଭିଭାଷଣର କିୟଦଂଶ ଏଠାରେ ଉଦ୍ଧାର କରିବା । ଏହା ୧୯୧୯ ମସିହା ଉତ୍କଳ ସମ୍ମିଳନୀର ସଭାପତି ପୁଣ୍ୟାତ୍ମା ଗୋପବନ୍ଧୁଙ୍କର .........."ଭାଇ ଉତ୍କଳବାସୀ, ତୁମେ ଯେ ହୁଅ, ବଙ୍ଗାଳୀ, ଓଡ଼ିଆ, ତେଲେଙ୍ଗା, ହିନ୍ଦୁସ୍ଥାନୀ, ହିନ୍ଦୁ, ଖ୍ରୀଷ୍ଟିଆନ, ମୁସଲମାନ, ଉତ୍କଳ ଭୂମି ତୁମକୁ ଆପଣା ଶରୀରରେ ବନ୍ଧି ତୁମର କେତେ ଅଳି ଅର୍ଦଳି ସହୁଛନ୍ତି । ତୁମର ହେଉ ବା ତୁମ ଶିଶୁ ସନ୍ତାନମାନଙ୍କର ହେଉ, ଏହା ଶୈଶବର ଲୀଳାଭୂମି, ଯୌବନର କର୍ମକ୍ଷେତ୍ର, ବାର୍ଦ୍ଧକ୍ୟର ବିଶ୍ରାମ ସ୍ଥାନ ଏବଂ ଅନ୍ତିମ କାଳର ଆଶ୍ରୟ । ଏ ଦେଶକୁ ଏପରି ଭାବରେ ଯେବେ ଗ୍ରହଣ କରିଥାଅ, ଦେଶାନୁରାଗର ପବିତ୍ର ସୂତ୍ରରେ ଏ ଦେଶର ଅନ୍ୟମାନଙ୍କ ସଙ୍ଗେ ଯଦି ଭାଗ୍ୟ ଆବଦ୍ଧ କରିଥାଅ, ତେବେ ଏ ଦେଶାନୁସାରେ ତୁମର ଜାତି । ଏ ଦେଶର ଇତିହାସ ଓ ସଭ୍ୟତା ତୁମର । କାରଣ ଏ ଦେଶର ଅତୀତ ଇତିହାସର ଫଳ ଏବେ ତୁମ୍ଭେ ଭୋଗ କରୁଅଛ ଏବଂ ଏହାର ବର୍ତ୍ତମାନ ଓ ଭବିଷ୍ୟତ ଗଠନରେ ତୁମ୍ଭେ ଯୋଗ ଦେଇଅଛ, ସୁତରାଂ ତୁମେ ଓଡ଼ିଆ, ତୁମେ ଉତ୍କଳ, ଉତ୍କଳ ସମ୍ମିଳନୀରେ ତୁମ୍ଭ ନିମନ୍ତେ ପ୍ରଶସ୍ତ ସ୍ଥାନ ରହିଅଛି । ଉତ୍କଳ ମାତା ମଧ୍ୟ ତୁମ୍ଭର ସେବା ପୂଜା ଗ୍ରହଣ କରିବାକୁ ସତୃଷ୍ଣ ନୟନରେ ଅନାଇ ରହିଛନ୍ତି ।"

ଉଲ୍ଲିଖିତ ଉକ୍ତି ଦୁଇଟି ପରସ୍ପର ପରିପୂରକ ଓ ମହାନୁଭବକତାର ପରିଚାୟକ । ଜାତି, ବର୍ଣ୍ଣ ଓ ସମ୍ପ୍ରଦାୟର ସଙ୍କୀର୍ଣ୍ଣ ପ୍ରାଚୀର ମଧ୍ୟରେ ଆବଦ୍ଧ ହେବାର ନାହିଁ । ଏଠି ସତ୍ୟ ପ୍ରତିଧ୍ୱନିତ ହୁଏ କପିଳ ସଂହିତାର ନିମ୍ନୋକ୍ତ ବାଣୀ—

"ବର୍ଷାନାଂ ଭାରତ ଶ୍ରେଷ୍ଠ ଦେଶାନାଂ ଉତ୍କଳ ଶ୍ରୁତଃ
ଉତ୍କଳସ୍ୟ ସମଂଦେଶ ଦେଶ ନାସ୍ତି ମହୀତଳେ ।"

ସେ ପ୍ରକାର ଉତ୍କଳ ଦେଶର ଉଦ୍‌ବୋଧନ କବିବରଙ୍କ ଭାଷାରେ "ଭାରତ ପଙ୍କଜ ଦଳମିବ ଉତ୍କଳ" । ସେ ଯୁଗରୁ ଏ ଯୁଗ ଯାଏ ଯଥାର୍ଥ ସେ ବାଣୀ, କଳା, ଭାସ୍କର୍ଯ୍ୟ, ଶିଳ୍ପ, ଶିକ୍ଷା, ସାହିତ୍ୟ, ଧର୍ମ ଆଦି ସମସ୍ତ ବିଭବରେ କୃତି କେବେହେଁ ବିଚ୍ଛିନ୍ନତାର ପ୍ରତୀକ ନୁହେଁ । ବହୁ ଦଳ ପରିଶୋଭିତ ପଙ୍କଜରୁ ଉଦ୍ଭୂତ ହୁଏ ଅନନ୍ୟସାଧାରଣ ଶୋଭା, ସୌଷ୍ଠବ, ସୌନ୍ଦର୍ଯ୍ୟ ଓ ସୌରଭ । 'ବହୁସ୍ୟାମ୍ ଏକୋଅହଂ' ପରି ବହୁ ଧାର ଧାରଣା ଓ ଧ୍ୟାନ ମଧ୍ୟରେ ପରିବର୍ଦ୍ଧିତ ଶୋଭାର ଭଣ୍ଡାର ରୂପେ ସଂସ୍କୃତି ଓ ସାଧନା । ଏହି ପଙ୍କଜ ଏକ ଦଳର ନୁହେଁ କିମ୍ବା ଅସଙ୍ଗତ ତଥା ବିଚ୍ଛିନ୍ନ ଓ ବିକ୍ଷିପ୍ତ ଦଳର ନୁହେଁ, ଦଳ ଓ ପୁଷ୍ପ ପରସ୍ପର ପରିପୂରକ । ଦଳର ଏକାଧିକ୍ୟ ପୁଷ୍ପର ଏକୀଭୂତ ଶୋଭାବର୍ଦ୍ଧକ । ଦଳର ସମାହାର ହିଁ ପୁଷ୍ପର ଶୋଭାର ଭଣ୍ଡାର ।

ସେହି କାରଣରୁ ଏହି ଭୂଖଣ୍ଡର ଗୌରବଗାନ ଯୁଗେ ଯୁଗେ ଭାରତୀୟ ପ୍ରଜ୍ଞା ଓ ପ୍ରତିଭାକୁ ସମୃଦ୍ଧ କରିଛି । ବିଭିନ୍ନ ଜଳଧାରାରେ ସମୃଦ୍ଧ ସ୍ରୋତ ଏହାର ପ୍ଲାବନ ବିଶ୍ୱବକ୍ଷରେ ଇତିହାସର ସ୍ୱୀକୃତି ଲାଭ କରିଛି । ସୌରଭର ବିକିରଣ ଦେଶ ତଥା ଦେଶାନ୍ତରର ଚିନ୍ତା ରାଜ୍ୟରେ ସ୍ପନ୍ଦିତ ହୋଇଛି । ଭୌଗୋଳିକ ସୀମାରେ ଚିହ୍ନିତ କଲେ କଳିଙ୍ଗ—ଉତ୍କଳ । କବିଙ୍କ ଭାଷାରେ "ଗଙ୍ଗାଠାରୁ ଗୋଦାବରୀ ଯାଏ ବ୍ୟାପୀ, କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି ।" ଉତ୍ତର ତଥା ଦକ୍ଷିଣରେ, ଭାରତର ବିଭିନ୍ନ ଅଞ୍ଚଳ ସହିତ ଏବଂ ଭାରତର କେନ୍ଦ୍ରାଞ୍ଚଳ ଓ ପଶ୍ଚିମାଞ୍ଚଳ ସହିତ ସଂଯୁକ୍ତ ରହି ପ୍ରଭାବିତ ହେବା ଏବଂ ପକ୍ଷାନ୍ତରରେ ପ୍ରଭାବିତ କରିବାର ସୁଯୋଗ ମିଳିଛି । ଶ୍ରୀଲଙ୍କା, ଜାଭା, ବାଲି, ମେକ୍‌ସିକୋ, ତିବ୍ବତ, ଚୀନଦେଶ ଇତ୍ୟାଦି ଦେଶ ସହିତ ବାଣିଜ୍ୟିକ, ସାଂସ୍କୃତିକ ଓ ରାଜନୈତିକ ସଂପର୍କର ସୁଯୋଗ ମିଳିଛି । ପୂର୍ବ ସୀମାରେ ଥିବା ସୁଦୀର୍ଘ ଉପକୂଳ ଯୋଗୁଁ ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ନରପତିମାନଙ୍କ ଉଦ୍ୟମରେ ରାଜ୍ୟ ବିସ୍ତାର ଚୂଡ଼ାନ୍ତ ହୋଇଥିଲା । ଗଙ୍ଗାଠାରୁ ଗୋଦାବରୀ ଯାଏଁ ଅତ୍ୟନ୍ତଃ ବଂଶଧାରା ପର୍ଯ୍ୟନ୍ତ ମୁଖଲିଙ୍ଗ ସମେତ ଉପକୂଳ ଭୂମିକୁ କଳିଙ୍ଗ କୁହାଯାଉଥିଲା । ଏହି ଉପକୂଳ ଅଞ୍ଚଳ ସହିତ ମେଦିନୀପୁରରୁ ଗୟା ପର୍ଯ୍ୟନ୍ତ ଥିଲା ସେ କାଳରେ ଉକ୍ଳଳ ବା ଉତ୍କଳ । ଆହୁରି ମଧ୍ୟ ଏହାର ପଶ୍ଚିମରେ କୋଶଳର ଆଜିକାଲିର ମଧ୍ୟପ୍ରଦେଶ ଅନ୍ତର୍ଗତ ରାୟପୁର, ଜବଲପୁର ସମେତ ଯାଜପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ତିନୋଟି ମିଶି ତ୍ରିକଳିଙ୍ଗ ଓ ସୋମବଂଶୀ ସମ୍ରାଟମାନେ ତ୍ରିକଳିଙ୍ଗାଧିପତି ଥିଲେ । ତେଣୁ ଭାରତରେ ତଥା ବିଶ୍ୱର ଅବଶିଷ୍ଟ ଅଞ୍ଚଳ ସହିତ ଓଡ଼ିଶା ଅତୀତରେ ନିବିଡ଼ ଭାବରେ ଜଡ଼ିତ ଥିଲା ।

ବିଶାଳ ଭୂଖଣ୍ଡର ଅଧିବାସୀମାନଙ୍କ ଭାଷା, ଧର୍ମ ଓ ଚଳଣି ବିଭିନ୍ନ ହୋଇଥିବାରୁ ସେ ଯୁଗରେ ଓଡ଼ିଶା ଏକ ନିର୍ଦ୍ଦିଷ୍ଟ ଭାଷାଭାଷୀ ସାଂସ୍କୃତିକ ଅଞ୍ଚଳ ନଥିଲା । ଠିକ୍ ଭାରତର ସଂମିଶ୍ରିତ (Composite) ସଂସ୍କୃତି ପରି ଏଠି ବିଭିନ୍ନ ଭାଷା, ଭାବ ଓ ବିଚାରଧାରାର ଅବାଧ ମିଳନ ଘଟିଥିଲା ।

"ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଦାନ" ଶୀର୍ଷକ ସନ୍ଦର୍ଭରେ ପଣ୍ଡିତ ନୀଳକଣ୍ଠ ଦାନର ଭୌତିକ ଓ ଆତ୍ମିକ ଦିଗ ସମ୍ବନ୍ଧରେ ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । ଶେଷୋକ୍ତ ଦିଗ ଉପରେ ଆଲୋକପାତ କରିବାକୁ ଯାଇ ଫ୍ରାନ୍ସ ଦେଶର ଅଧ୍ୟାପକ (Sylon Leog)ଙ୍କ ପ୍ରମାଣକୁ ଉଦ୍ଧାର କରି ସେ କହନ୍ତି ଯେ, ୭୯୫ ଖ୍ରୀଷ୍ଟାବ୍ଦରେ ଉତ୍କଳର ରାଜଧାନୀ ଗୁହେଶ୍ୱର ପାଟକ (ଯାଜପୁର)ର ସମ୍ରାଟ ଶୁଭକର କେଶରୀ ଗଣ୍ଡବ୍ୟୂହ ନାମକ ବୌଦ୍ଧ ଧର୍ମର ଏକ ଯୋଗଗ୍ରନ୍ଥ ନିଜେ ରଚନା କରି ତତ୍କାଳୀନ ଚୀନ୍ ସମ୍ରାଟ ( Te-tsong ) ଙ୍କୁ ସେ ଉପହାର ଦେଇଥିଲେ । ଏହାକୁ ନେଇ ଯାଇଥିଲେ ଯୋଗସିଦ୍ଧ ପଣ୍ଡିତ ପ୍ରାଜ୍ଞ । ପ୍ରାଜ୍ଞ ଆଫଗାନିସ୍ଥାନରୁ ଆସି ଓଡ଼ିଶାର ପୁଷ୍ପଗିରି ବିହାରରେ ଯୋଗ ଶିକ୍ଷା କରୁଥିଲେ । ସେ ଏଠାରେ ହିଁ ଯୋଗ ସିଦ୍ଧ ହୋଇଥିଲେ । କଟକ ଜିଲ୍ଲାର ରତ୍ନଗିରି, ଉଦୟଗିରି ଓ ଲଳିତଗିରିକୁ ନେଇ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ସେତେବେଳେ ବୌଦ୍ଧ ଶିକ୍ଷା ପାଇଁ ବିହାରର ନାଳନ୍ଦା ସହିତ ସମକକ୍ଷ ପ୍ରସିଦ୍ଧି ଲାଭ କରିଥିଲା ।

ମନୀଷୀ ପ୍ରାଜ୍ଞ ଯେପରି ଓଡ଼ିଶାକୁ ଆକୃଷ୍ଟ ହୋଇ ଆସିଥିଲେ, ସେପରି ଉଲ୍ଲେଖନୀୟ ହେଉଛି ଯେ ଖ୍ରୀଷ୍ଟ ୭ମ ଶତାବ୍ଦୀରେ ୯ଜଣ ବୌଦ୍ଧ ଭିକ୍ଷୁ ଓଡ଼ିଶାରୁ ବିତାଡ଼ିତ ହୋଇ ବ୍ରହ୍ମଦେଶର ରାଜାଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରି ରାଜପ୍ରତିଷ୍ଠା ଲାଭକରିଥିଲେ । ଏହା ହାର୍ଭେ (Harvey)ଙ୍କ ଲିଖିତ ବ୍ରହ୍ମଦେଶର ଇତିହାସରୁ ଜଣାପଡ଼େ । ସେହିପରି ସିଂହଳ ସହିତ ଆମ ସମ୍ପର୍କ ସାଂସ୍କୃତିକ ଓ ଐତିହାସିକ । ସଂଘମିତ୍ରା ଓ ମହେନ୍ଦ୍ର ସେଠାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ପୂର୍ବରୁ ମଧ୍ୟ ସୂଚନା ଦିଆଯାଇଛି ଯେ ଜାଭା ପ୍ରଭୃତି ଦ୍ୱୀପପୁଞ୍ଜ ସହିତ ଆମ ସମ୍ପର୍କ କେବଳ କିମ୍ବଦନ୍ତୀରୁ ନୁହେଁ, ଏହା ଇତିହାସ ପ୍ରମାଣିତ ।

ଆତ୍ମିକ ଦାନର ଅନ୍ୟତମ ଦିଗ ହେଉଛି ଧର୍ମକ୍ଷେତ୍ର । ପଣ୍ଡିତ ନୀଳକଣ୍ଠଙ୍କ ବିସ୍ତୃତ ଓ ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ ଅନୁସାରେ ବୌଦ୍ଧ, ଜୈନ ବା ଅନ୍ୟ ଯେଉଁ ନାମରେ ଇତିହାସରେ ବା ପରମ୍ପରାରେ ନାମିତ ହୋଇଥାନ୍ତୁ ପଛକେ ଏହା ପୂର୍ବ ତଥା ପୂର୍ବ ଉପକୂଳ ଭାରତର ପାରମ୍ପରିକ ଧର୍ମ । ଭୌତିକ ଦିଗରୁ ବିଚାର କଲେ ଓଡ଼ିଶାର ଦାନ ବା ଆଦାନ ପ୍ରଦାନର ସମ୍ପର୍କ ସୁପ୍ରତିଷ୍ଠିତ । ଆଚାର, ବ୍ୟବହାର, ବ୍ୟବସାୟ, କଳା, କବିତା, ରେଖାଖୋଦନ ପ୍ରଭୃତି ଦିଗରେ ବହୁବିକାଶ ଘଟିଛି । ଗଙ୍ଗ ସଭ୍ୟତା, କୋଶଳ ସଭ୍ୟତା, ଓଡ୍ର ସଭ୍ୟତା ଓ ଶବର ସଭ୍ୟତାର ସମନ୍ୱୟ ତଥା ସଂଶ୍ଳେଷଣ ଏହି ଐତିହାସିକ ଭୂମିରେ ଘଟିଛି । ଅତଏବ ପଣ୍ଡିତ ନୀଳକଣ୍ଠଙ୍କ ସିଦ୍ଧାନ୍ତ ଅନୁସାରେ ବିଶ୍ୱ ତଥା ଭାରତର ବିକ୍ଷୋଭିତ ଶକ୍ତି ସମୂହର ସମତା ଓ ସାମଞ୍ଜସ୍ୟ ପ୍ରତିପାଦନ

କରିବା ପାଇଁ ଓଡ଼ିଶାର ଦାନ ଅତୁଳନୀୟ ।

କେବଳ ଆଜି ନୁହେଁ, ଆଜି ଅବଶ୍ୟ ଏହି ପ୍ରକ୍ରିୟା ଗଣମାଧ୍ୟମ ଯୋଗୁଁ ଏକ ବିଶ୍ୱବ୍ୟାପୀ ଆନ୍ଦୋଳନର ରୂପ ନେଇଛି । ପ୍ରାଚୀନ କାଳରେ ଭାରତ ବିଭିନ୍ନ ସମାଜକୁ ବାନ୍ଧି ରଖିଥିଲା । ଏହା ଫଳରେ ସାମାଜିକ ଓ କୌଟୁମ୍ବିକ ସମ୍ପର୍କ ସ୍ଥାପିତ ହୋଇଛି । ଏହାର ବାହକ ଥିଲା—ସଂସ୍କୃତ ଓ ଭାରତୀୟ ସଂସ୍କୃତିର ସଂସ୍କୃତ ହେଉଛି ମୂଳାଧାର । ବହୁ ଭାଷାଭାଷୀ ଭାରତରେ ସଂସ୍କୃତ ଆଧୁନିକ ଭାରତୀୟ ଭାଷା ସମୂହର ଜନନୀ ଓ ସେଥିପାଇଁ ସଂସ୍କୃତକୁ ରାଷ୍ଟ୍ରଭାଷାର ସ୍ଥାନ ଦେବା ପାଇଁ କାଟ୍‌ଜୁ, ମୁନ୍‌ସୀ ଆଦି ଅନେକ ଅକାଟ୍ୟ ଯୁକ୍ତି ବାଢ଼ିଥାନ୍ତି । ସେମାନଙ୍କ ମତରେ ଏହା କରାଗଲେ ସାଂସ୍କୃତିକ ଏକାତ୍ମତା ଏକ ସହଜସାଧ୍ୟ ବ୍ୟାପାର ହେବ । ଏ କ୍ଷେତ୍ରରେ ସଂସ୍କୃତ ସାହିତ୍ୟକୁ ଉତ୍କଳର ଦାନ ସମ୍ବନ୍ଧରେ ଆଲୋଚନା କରାଗଲେ ଭାରତୀୟ ସଂସ୍କୃତ ସାହିତ୍ୟର ନଭୋମଣ୍ଡଳରେ ଉତ୍କଳର ଦାନ ପରମ୍ପରା କ୍ରମେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍ମ ଜାଜ୍ଜ୍ୱଲ୍ୟମାନ ଓ ଏହା ଫଳରେ ନଭୋମଣ୍ଡଳ ଦେଦୀପ୍ୟମାନ । ପଣ୍ଡିତ ନୀଳକଣ୍ଠଙ୍କ ସଂସ୍କୃତ ଓ ସଂସ୍କୃତି ପରି, ଗବେଷକ ଡକ୍ଟର କୃଷ୍ଣଚନ୍ଦ୍ର ତ୍ରିପାଠୀ ଏହି ଆଲୋଚନାକୁ (୧) ସାହିତ୍ୟ, (୨) ନାଟକ, (୩) କାବ୍ୟ ଓ ଖଣ୍ଡକାବ୍ୟ, (୪) ଅଳଙ୍କାର ସାହିତ୍ୟ ଓ (୫) ସ୍ମୃତି ଶାସ୍ତ୍ରରେ ବିଭକ୍ତ କରିଛନ୍ତି । ଏକ ସୁବିସ୍ତୃତ ଗ୍ରନ୍ଥସୂଚୀ ଓ ସଂସ୍କୃତ ଶିଳାଲେଖ ତଥା ଖ୍ରୀଷ୍ଟପୂର୍ବ ୩ୟ ଶତକରୁ ଓଡ଼ିଶାର ଇତିହାସର ଆଶ୍ରୟ ନିଆଯାଇଛି । ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ପ୍ରକାଶିତ ଓଡ଼ିଶାରେ ସଂସ୍କୃତ ଚର୍ଚ୍ଚାର ପରମ୍ପରା (୧୯୮୨) ଛଅ ଜଣ ଗବେଷକଙ୍କ ମିଳିତ ଉଦ୍ୟମରେ ଛଅ-ଗୋଟି ସନ୍ଦର୍ଭର ସମାବେଶ କରାଯାଇଛି । ଏପରି ଅନେକ ଗବେଷକ ଓ ବିଦ୍ୱାନ୍‌ମଣ୍ଡଳୀଙ୍କ ସଂସ୍କୃତ ସାରସ୍ୱତ ସାଧନାର ସମ୍ୟକ୍ ଆଲୋଚନା ଏହି ପ୍ରବନ୍ଧର କଳେବର ଦୃଷ୍ଟିରୁ ସମ୍ଭବ ନୁହେଁ । ତେଣୁ ଅଦ୍ୟାବଧି ଅବାଶିତ ରହିଥିବା ସଂପୃକ୍ତ ସାଧନାରୁ ମାତ୍ର କେତୋଟି ଦୃଷ୍ଟାନ୍ତ ଉପସ୍ଥାପନ କରିବା । ଖ୍ରୀଷ୍ଟପୂର୍ବ ୩ୟ ଶତକରେ ଧଉଳିଗିରି ଓ ଜଉଗଡ଼ରେ କଳିଙ୍ଗ ବିଜେତା ଅଶୋକଙ୍କର ୧୪ଟି ଶିଳାଲେଖ ମଧ୍ଯ ଅର୍ଦ୍ଧ ଭାଷାରେ ଦେଖାଯାଏ । ଅନୁଶାସନଟିରେ ସମ୍ବେଦନା, କରୁଣା, ସହିଷ୍ଣୁତା ଓ ସାମ୍ୟଭାବର ବାଣୀ ଦ୍ୱାରା ଶିଳାଗାତ୍ର ଉତ୍କୀର୍ଣ୍ଣ ହୋଇଛି ଓ ଏହା "ଶତାବ୍ଦୀ ଶତାବ୍ଦୀ ଧରି ଉତ୍କଳୀୟ ତଥା ଭାରତୀୟ ସଂସ୍କୃତିର ଜୟଗାନ କରିବା ସଙ୍ଗେ ସଙ୍ଗେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମଗ୍ର ବିଶ୍ୱର ଏକ କାଳଜୟୀ ଆବେଦନ ସୃଷ୍ଟି କରିଛି ।" ଗୁପ୍ତ ରାଜତ୍ୱ କାଳରେ ନାଗବଂଶୀୟ ସମ୍ରାଟ୍ ଶତ୍ରୁ ଭଞ୍ଜଙ୍କର ୪ର୍ଥ ଶତାବ୍ଦୀର ବ୍ରାହ୍ମୀବର୍ଣ୍ଣମାଳାରେ ଖୋଦିତ ସଂସ୍କୃତ ଭାଷାର ଶିଳାଲେଖ ପରବର୍ତ୍ତୀ କାଳରେ ବାଣଭଟ୍ଟଙ୍କ ପ୍ରସିଦ୍ଧ "କାଦମ୍ବରୀ" ଉପନ୍ୟାସ ଭାଷାର ଜନନୀ ସ୍ୱରୂପା । ଭଟ୍ଟ ନାରାୟଣଙ୍କ 'ବେଣୀସଂହାର' ନାଟକ, ମୁରାରି ମିଶ୍ରଙ୍କ 'ଅନର୍ଘ ରାଘବ' କୃଷ୍ଣ ମିଶ୍ରଙ୍କ 'ପ୍ରବୋଧ ଚନ୍ଦ୍ରୋଦୟ' ପ୍ରଭୃତି ଉଚ୍ଚକୋଟିର ନାଟକ ପଣ୍ଡିତମଣ୍ଡଳୀଙ୍କ ଦୃଷ୍ଟି ଆକର୍ଷଣ କରିଛି । ବିଶ୍ୱନାଥ କବିରାଜଙ୍କର ବହୁ ଉଲ୍ଲେଖନୀୟ କୃତି ମଧ୍ୟରେ ସାହିତ୍ୟ ଦର୍ପଣ ଭାରତୀୟ

ସଂସ୍କୃତ ସମୁଦ୍ରର ଅତୁଳନୀୟ ରତ୍ନ ଓ ଏହାର ଅନୁବାଦ ଇଂରାଜୀ, ହିନ୍ଦୀ, ବଙ୍ଗଳା ଆଦି ଭାଷାରେ ଦେଖିବାକୁ ମିଳେ । କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ମହାକାବ୍ୟ "ଭାରତାମୃତମ୍" ଏକ ଅକ୍ଷୟ କୀର୍ତ୍ତି ଭାବରେ ସ୍ୱୀକୃତ । ଏକାଦଶ ଶତାବ୍ଦୀରେ "ଭାସ୍ୱତୀ"ର ରଚୟିତା ଶତାନନ୍ଦ ଆଗ୍ରହି "ତ୍ରିଦିବେ ଭାସ୍ୱତୀ ଧନ୍ୟଃ" ହୋଇ ଅଛନ୍ତି । ଏହାଙ୍କର ୨୦ଟି ଟୀକା ଭାରତରେ ବିଭିନ୍ନ ପ୍ରଦେଶର ଜ୍ୟୋତିର୍ବିଦ୍‌ମାନଙ୍କ ଦ୍ୱାରା ପ୍ରଣୀତ ହୋଇଛି । ଜଗନ୍ନାଥ ଦାସ, ଦୀନକୃଷ୍ଣ ଦାସ, ଚକ୍ରପାଣି ପଟ୍ଟନାୟକ ଓ ବ୍ରଜନାଥ ବଡ଼ଜେନା ପ୍ରଭୃତି ମଧ୍ୟଯୁଗୀୟ ଓଡ଼ିଆ କବିଙ୍କର ସଂସ୍କୃତ ରଚନା ରହିଛି । "ସଂସ୍କୃତର ପ୍ରଭାବ ଓଡ଼ିଆ ସାହିତ୍ୟରେ ଭାତ ଯୁଗ ଅନ୍ତକାନ୍ତ ଚିର ସୁସ୍ପଷ୍ଟ ।" ଏପରିକି କବିବର ରାଧାନାଥ ଆଧୁନିକ ଓଡ଼ିଆ କବିତାର ଜନକ ହେଲେ ହେଁ ସେ ସଂସ୍କୃତରେ ଭାରତପଙ୍କଜ ରଚନା କରିଛନ୍ତି ଓ ପରେ ଉତ୍କଳ ସମ୍ମିଳନୀ ହେଲେ ହେଁ "ଭାରତ ବନ୍ଦନା" ଗାନ କରାଯାଇଛି ।

ଉତ୍କଳୀୟ କବିରାଜ ଶ୍ରୀ ଜୟଦେବ ଲଳିତ କୋମଳ କାନ୍ତ ପଦାବଳୀ ମଣ୍ଡିତ ଗୀତିକାବ୍ୟ 'ଗୀତ ଗୋବିନ୍ଦ' ରଚନା କରି ବିଶ୍ୱ ବିଖ୍ୟାତ ହୋଇଛନ୍ତି । ଭାରତର ବିଭିନ୍ନ ପ୍ରାନ୍ତରେ ଏହି ଗୀତଛନ୍ଦର ଅନୁକରଣ ରହିଛି । ଇଂରେଜ, ଫରାସୀ ଓ ଜର୍ମାନ ପଣ୍ଡିତମାନେ ସ୍ୱ ସ୍ୱ ଭାଷାରେ ଏହାର ଅନୁବାଦ କରିଛନ୍ତି । ଗଙ୍ଗ ରାଜାଙ୍କର ପ୍ରାରମ୍ଭରେ "ନୈଷଧ ଚରିତ" ପ୍ରଣେତା ଭାରତ ପ୍ରଖ୍ୟାତ ସଂସ୍କୃତ କବି ଶ୍ରୀହର୍ଷଙ୍କ ଉତ୍କଳୀୟତା ସମ୍ବନ୍ଧରେ ଗବେଷକ କେଦାରନାଥ ମହାପାତ୍ରଙ୍କ ଆଲୋଚନା ଦ୍ରଷ୍ଟବ୍ୟ (କୋଣାର୍କ, ପ୍ରଥମ ବର୍ଷ, ୪ର୍ଥ ସଂଖ୍ୟା) । ୭ମ ଶତାବ୍ଦୀରେ ନାଟ୍ୟକୃତ ଯୋଗୁଁ ଭବଭୂତି ସର୍ବଭାରତୀୟ ସ୍ତରରେ ଗୌରବମୟ ସ୍ଥାନ ଅଧିକାର କରିଛନ୍ତି । ସେ ପଶ୍ଚିମ ଓଡ଼ିଶାର ବୋଲି କେତେ ଗବେଷକ ମତ ଦିଅନ୍ତି (ସମ୍ବଲପୁର ଇତିହାସ, ଶିବ ପ୍ରସାଦ ଦାଶ) । ମହାକବି କାଳିଦାସଙ୍କୁ ଉତ୍କଳୀୟ ବୋଲି ପ୍ରମାଣ କରିଛନ୍ତି ପୀତାମ୍ବର ପଣ୍ଡା ତାଙ୍କ ପ୍ରଣୀତ Kalidas in his own wordsରେ (1960, Balasore Town Press) ଭୁବନେଶ୍ୱର ଅଦୂରବର୍ତ୍ତୀ କପିଳେଶ୍ୱର ଗ୍ରାମରେ ବୁଦ୍ଧଦେବଙ୍କ ଜନ୍ମ ବିଷୟରେ ତଥ୍ୟସମ୍ବଳିତ ଆଲୋଚନା କରିଛନ୍ତି, ସ୍ୱର୍ଗତଃ ଚକ୍ରଧର ମହାପାତ୍ର । ସୁତରାଂ ସଂସ୍କୃତ ସାହିତ୍ୟସାଧନାରେ ଉତ୍କଳୀୟ ଗୌରବୋଜ୍ଜ୍ୱଳ ପରମ୍ପରା ଭାରତରୁ ବିଚ୍ଛିନ୍ନ ନୁହେଁ; ବରଂ ଏହା ଯଥାର୍ଥତଃ ତା'ର ଶକ୍ତିଶାଳୀ ପ୍ରତିରୂପ । ଭାରତୀୟ ରୂପବିଭବ ଏଥିରେ ପ୍ରତିଫଳିତ ।

ଏହି ଆଲୋଚନାର ଅନ୍ୟ ଏକ ଦିଗ ହେଉଛି ସନ୍ଥ ପରମ୍ପରା । ବିଶ୍ୱ ତଥା ଭାରତ ସେଥିଯୋଗୁଁ ମହିମାନ୍ୱିତ । ଏହାର କ୍ଷେତ୍ର ଓ ଭିତ୍ତି ଭିନ୍ନ ଭିନ୍ନ ହେଲେ ହେଁ ଏହାର ଅନ୍ତଃସ୍ରୋତ ହେଉଛି ନିତ୍ୟନୂତନତା, ଯୁଗେ ଯୁଗେ ନିତ୍ୟ ଓ ଚିରନ୍ତନ; କିନ୍ତୁ ପ୍ରତି ଯୁଗକୁ ଏହା ନୂତନ, ଉତ୍କଳୀୟ ସନ୍ଥଜୀବନ ପ୍ରବାହରେ ତାହାହିଁ ପ୍ରତିଫଳିତ ହୋଇଅଛି । ଅକାମ୍ବିଲ, ଚମ୍ପୂ ଅରକ୍ଷିତ ଆଦିଙ୍କଠାରୁ ଆରମ୍ଭକରି ସାଲବେଗ, ଦାସିଆ ବାଉରୀ, ସାଧୁ ସୁନ୍ଦର ଦାସ,

ଶ୍ରୀମ ଭୋଇ ପ୍ରଭୃତି ଏହି ପରମ୍ପରାର ଉଜ୍ଜ୍ୱଳ ପ୍ରତୀକ । ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଜଗନ୍ନାଥ ଓ ବଳରାମ ପଞ୍ଚସଖା ନାମରେ ନାମିତ । ଏହି ସମସ୍ତଙ୍କର ସାଧ, ସାଧନାପଦ୍ଧତି ଓ ସାହିତ୍ୟକୃତିରେ ସ୍ୱାତନ୍ତ୍ର୍ୟ ରହିଛି । କିନ୍ତୁ ଭାରତୀୟ ଜୀବନରେ ଯେପରି, ଏମାନେ ସେହିପରି ଭାରତୀୟ ଐତିହ୍ୟ ସହିତ ଅନାବିଳ ମାଧୁର୍ଯ୍ୟରେ ସଂଯୁକ୍ତ ରହିଛନ୍ତି । ଧ୍ୱନି-ପ୍ରତିଧ୍ୱନିର ଘାତ ପ୍ରତିଘାତ ପରି ଏକ ଅଖଣ୍ଡ ମାଳା ସଦୃଶ ସୁଶୋଭିତ । ପୂର୍ବସୂଚିତ ଭୌଗୋଳିକ ଅବସ୍ଥିତି ଯୋଗୁଁ ସ୍ଥଳ, ଜଳ, ନଦୀପଥ ଦ୍ୱାରା ଉତ୍କଳ ଭାରତର ଅବଶିଷ୍ଟାଂଶ ସହିତ ସଂଯୋଗର ସଂପର୍କ ରକ୍ଷା କରିଅଛି । ଶ୍ରୀଚୈତନ୍ୟ, ଗୁରୁ ନାନକ, କବିର ଆଦି ଉତ୍ତରରୁ ତଥା ଶ୍ରୀ ରାମାନୁଜାଚାର୍ଯ୍ୟ, ଶ୍ରୀ ବିଷ୍ଣୁସ୍ୱାମୀ, ଆଚାର୍ଯ୍ୟ ନିମ୍ବାର୍କ, ଶ୍ରୀ ମାଧ୍ୱାଚାର୍ଯ୍ୟ ଆଦି ଦକ୍ଷିଣରୁ ଆସି ଶ୍ରୀକ୍ଷେତ୍ରରେ ସ୍ୱ ସ୍ୱ ମହିମାର ପ୍ରଚାର କରିଛନ୍ତି । ଭାରତୀୟ ପ୍ରତିଭାର ଏହା ଏକ ଉଜ୍ଜ୍ୱଳ ପ୍ରତିଛବି ପରି ମନେହୁଏ ।

ଭାସ୍କର୍ଯ୍ୟ, ସ୍ଥାପତ୍ୟ, କଳା, ନୃତ୍ୟ, ସଙ୍ଗୀତ, ନାଟକ, ଆୟୁର୍ବେଦ, ଜ୍ୟୋତିଷ, ତନ୍ତ୍ର, ବ୍ୟାକରଣ, ପୁରାଣ, ଦର୍ଶନ, ଅଭିଧାନ ଆଦି ବହୁବିଧ ଦିଗରୁ ବିଚାର କଲେ ଚିନ୍ତା, କଳାକୃତି ଓ ସାଧନାରେ ଭାବର ସଂକ୍ରମଣ ଅବାଧରେ ଘଟିଥିବାର ଅନୁମାନ କରାଯାଏ । ଭାରତ ଏସବୁ ଫଳରେ ଶୋଭାବନ୍ତ, ଋଦ୍ଧିମନ୍ତ ଓ ଗରୀୟାନ୍ ହୋଇଅଛି ଏବଂ ଉତ୍କଳୀୟ ଦାନ ଏଥି ସହିତ ଅନନ୍ୟସାଧାରଣ ହୋଇ ରହିଛି । ସପ୍ତମ ଶତାବ୍ଦୀ ଓ ଏଥି-ପୂର୍ବର ଭାସ୍କର୍ଯ୍ୟ ନୈପୁଣ୍ୟ ମହନୀୟ ଓ ମୋହନୀୟ ହୋଇ ବିଶ୍ୱବିଶ୍ରୁତ ହୋଇଛି । ପ୍ରସ୍ତର ଗାତ୍ର ଏଯାବତ୍ ପୁଷ୍ପିତ, ଛନ୍ଦମୟ ଓ ଜୀବନ୍ତ ହୋଇଛି । କଳାକୃତିରେ ବିଶ୍ୱ ବିସ୍ମୟ ହେଉଛି ଗରିମାମୟ ଉତ୍କଳ, କଳିଙ୍ଗ ଓ ସେଥିର କେତୋଟି ନମୁନା ହେଉଛି କୋଣାର୍କର ସୂର୍ଯ୍ୟ ମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ରାଜରାଣୀ ମନ୍ଦିର ଆଦି । ଏସବୁ ଅତୁଳ୍ୟ କଳାକୀର୍ତ୍ତି କଳା ପାଇଁ କଳାର ଜୟବୈଜୟନ୍ତୀ ବହନ କରିଛନ୍ତି ଓ ଏଥିରେ କଳାକାର ଓ କଳାପୃଷ୍ଠପୋଷକ ଗୌଣ ବା ଅଗ୍ରଣୀ ହୋଇଛନ୍ତି । ସମଷ୍ଟି ପାଇଁ ବ୍ୟକ୍ତିକୁ ଓ ଦେଶ ପାଇଁ ବ୍ୟକ୍ତିସ୍ୱାର୍ଥକୁ ଜଳାଞ୍ଜଳି ଦେବାର ପରମ୍ପରା ଉତ୍କଳ ଓ ଭାରତରେ ସୁପ୍ରତିଷ୍ଠିତ । ଏହାର ଗୋଟିଏ ଧ୍ୱନି ମିଳେ କଳିଙ୍ଗ ଯୁଦ୍ଧରେ, ଯାହାର ଇତିହାସ ଚଣ୍ଡାଶୋକଙ୍କ ଧର୍ମାଶୋକ ପରିଣତିକୁ ସ୍ୱର୍ଣ୍ଣାଭ ଚତ୍ରିତ କରୁଥିବା ସ୍ଥଳେ ଯେଉଁ ଅଗଣିତ ନରନାରୀମାନଙ୍କ ରକ୍ତରଞ୍ଜିତ ସ୍ରୋତରେ ଏହି ପରିବର୍ତ୍ତନ ଘଟିଲା, ସେମାନଙ୍କ ନାମୋଲ୍ଲେଖ କରିବାରେ କୁଣ୍ଠିତ । ଏହି ଧ୍ୱନିର ପ୍ରତିଧ୍ୱନି ସନ୍ଥକବି ଭୀମ ଭୋଇଙ୍କ ଭାଷାରେ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ" ହୁଏ । ଏହି ପ୍ରତିଧ୍ୱନିର ଆଦ୍ୟଧ୍ୱନି ହୋଇପାରେ ମହା ଭାରତୀୟ ପ୍ରାର୍ଥନା, "କାମୟେ ଦୁଃଖତପ୍ତାନାମ୍ ପ୍ରାଣିନାମ ଆର୍ତ୍ତି ନାଶନମ୍" ବା ଉପନିଷଦରେ "ସର୍ବେଽପି ସୁଖିନଃ ସନ୍ତୁ ।"

ହାତୀଗୁମ୍ଫା ଶିଳାଲିପିରୁ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ଗାନ୍ଧର୍ବ ବେଦ ବିଶାରଦ ଖାରବେଳ (ଗାନ୍ଧର୍ବ ବେଦ ବୁଧୋ) ଦପ—ନାଟଗୀତ—ବାଦିତ—ଦନ୍ଦସ ନାହିଁ

ଉପବ ସମାଜ କରପ ନାହିଁ ତ କ୍ରୀଡ଼ସ୍ଥିତି—ନଗରମ୍ ଲୋକମାନଙ୍କ ମନୋରଞ୍ଜନ ପାଇଁ "ରାଣୀଗୁମ୍ଫା" ପ୍ରେକ୍ଷାଳୟ ନିର୍ମାଣ କରିଥିଲେ । ଏହାର ପରିମାପ ଭରତମୁନିକୃତ ନାଟ୍ୟ-ଶାସ୍ତ୍ର ବର୍ଣ୍ଣିତ "ବିକୃଷ୍ଟ ମଧ୍ୟମ ପ୍ରେକ୍ଷାବେଶ୍ମ" ବୋଲି ପ୍ରମାଣିତ (Yatra, the theatre by Dhiren Dash) ଏପରି ଶାସ୍ତ୍ରୀୟ ପ୍ରେକ୍ଷାଳୟ ବର୍ତ୍ତମାନ ସୁଦ୍ଧା ଅନ୍ୟ କେଉଁଠି ମିଳିନାହିଁ । ପୂର୍ବରୁ ସୂଚନା ଦିଆଯାଇଛି ଯେ, ଚତୁର୍ଦ୍ଦଶ ଶତାବ୍ଦୀରେ ବିଶ୍ୱନାଥ କବିରାଜଙ୍କ "ସାହିତ୍ୟ ଦର୍ପଣ" ଭାରତୀୟ ସାହିତ୍ୟରେ ଏକ ଅପୂରଣୀୟ ଗ୍ରନ୍ଥ । ଏହି ଗ୍ରନ୍ଥରେ ଉଲ୍ଲିଖିତ ବହୁ ନାଟ୍ୟଶାସ୍ତ୍ର ବିଷୟରେ ଜାଣିପାରି ଗବେଷକମାନେ ଏହାକୁ ଠାବ କରିଥିଲେ । ରାଣୀଗୁମ୍ଫାର ପରିମାପ ସମ୍ପୂର୍ଣ୍ଣରୂପେ ନାଟ୍ୟଶାସ୍ତ୍ରର ବର୍ଣ୍ଣନା ଅନୁସାରେ ହୋଇଥିବାରୁ ଏହାର ପ୍ରାଚୀନତା ସୁପ୍ରତିଷ୍ଠିତ ।

ଉତ୍କଳର ବୈଶିଷ୍ଟ୍ୟ ମଧ୍ୟ ପ୍ରତିଫଳିତ ହୁଏ ଅଚ୍ୟୁତାନନ୍ଦଙ୍କ ରଚନା ଦ୍ୱାରେ । ଷୋଡ଼ଶ ଶତାବ୍ଦୀରେ ସେ ସର୍ବଭାରତୀୟ ସ୍ତରରେ ଏହାର ପ୍ରଥମ ପ୍ରବର୍ତ୍ତକ—

"ଗୋପରେ ରହାସ, ନଦୀଆରେ କୀର୍ତ୍ତନ
ଏଥି ଆମ୍ଭେ ଉଦେ କଲୁ ରହାସ କୀର୍ତ୍ତନ"

"କଳିରେ ରହାସ ଥାନ ଅଟଇ ଜଙ୍ଘେର" (ଝଙ୍କଡ଼) କୀର୍ତ୍ତନ ମାଧ୍ୟମରେ ରହାସଦ୍ୱାରା ଐକ୍ୟ ପ୍ରତିଷ୍ଠାର ଏହା ହେଉଛି ନିଦର୍ଶନ । ଆହୁରି ମଧ୍ୟ ଗବେଷକମାନେ ସୂଚିତ କରନ୍ତି ଯେ, ଆସାମ ରାଜ୍ୟର ସାଂସ୍କୃତିକ ଜନକ ଶ୍ରୀ ଶ୍ରୀ ଶଙ୍କର ଦେବ ସର୍ବ ଭାରତ ଭ୍ରମଣ ଶେଷରେ ପୁରୀକୁ ଆଗମନ କରିଥିଲେ । ସେଠି ଅବସ୍ଥାନ କାଳରେ ଗୀତ କାବ୍ୟ ମାଧ୍ୟମରେ ନୀତିଶିକ୍ଷା ଦେବାର ଧାରଣା ପାଇଥିଲେ । ସେ ଆସାମକୁ ଫେରିଯାଇ "ଅଙ୍କିଆ ନାଟ" ଓ "ଭାଓନା" ଇତ୍ୟାଦି ଆସାମରେ ଆରମ୍ଭ କରିଥିଲେ । ଅସାମର "ସତ୍ର" ଓ "ନାମ ଘର" ଆଦି ତାଙ୍କ ଦାନ । ଡ: ସତ୍ୟନାରାୟଣ ରାଜଗୁରୁ କୋଣାର୍କ ୪୪ଶ ସଂଖ୍ୟା, ୧୯୮୧, ପ୍ରମାଣ କରିଛନ୍ତି ଯେ ଅହୋବଳ ହେଉଛନ୍ତି "ସଙ୍ଗୀତ ପାରିଜାତ" ଗ୍ରନ୍ଥ କର୍ତ୍ତା ଓ ଏହି ଗ୍ରନ୍ଥରେ ଯେଉଁ ରାଗରାଗିଣୀ ବର୍ଣ୍ଣନା କରାଯାଇଛି ସେଥିରୁ ଅଧିକାଂଶ ଓଡ଼ିଶାରେ ହିଁ ପ୍ରଚଳିତ । ଏ ସବୁ ଉତ୍ତରଭାରତୀୟ ଓ ଦକ୍ଷିଣଭାରତୀୟ ସଙ୍ଗୀତଠାରୁ ସ୍ୱତନ୍ତ୍ର ହେବା ସଙ୍ଗେ ସଙ୍ଗେ ଉଭୟ ମଧ୍ୟରେ ସମନ୍ୱୟ ରକ୍ଷା କରୁଛି । ଆମ ସୁପରିଚିତ ଗଣଶିକ୍ଷା ମାଧ୍ୟମ ପାଲାରେ ପ୍ରୀତିକର ରାଗିଣୀରେ ହିନ୍ଦୁ ଓ ମୁସଲମାନ ଐକ୍ୟର ନିଦର୍ଶନ ହୋଇଛି । ଓଡ଼ିଆ, ବଙ୍ଗଳା, ଉର୍ଦ୍ଦୁ ଓ ହିନ୍ଦୀ ଭାଷାର ଏକ ଅପୂର୍ବ ମିଶ୍ରଣ ଏହି ଐକ୍ୟର ବାହକ ଅଟେ । ନୃତ୍ୟକଳା ଓ ସଙ୍ଗୀତ ବିଦ୍ୟାରେ ଓଡ଼ିଶା ନିଜର ମୌଳିକତା ରକ୍ଷା କରିବା ସଙ୍ଗେ ସଙ୍ଗେ ବିଶ୍ୱ ତଥା ଜାତୀୟ ଚିତ୍ରକୁ ବୈଚିତ୍ର୍ୟମୟ ଓ ବର୍ଣ୍ଣାଢ୍ୟ କରିଛି ।

ଗୁରୁକୁଳ ଶିକ୍ଷାର ବୈଶିଷ୍ଟ୍ୟ ସହିତ ଜାତୀୟତାର ସମନ୍ୱୟ କରାଯାଇ ଜନଜୀବନର ଅନ୍ୟତମ ସର୍ବନିମ୍ନ ମୌଳିକ ଆବଶ୍ୟକତାର ପରିପୂର୍ତ୍ତି କରିବା ଉଦ୍ଦେଶ୍ୟରେ ସ୍ୱାଧୀନତାର

ପ୍ରାକ୍ କାଳରେ ଯେଉଁ ସବୁ ପରୀକ୍ଷା କରାଯାଇଥିଲା, ତନ୍ମଧ୍ୟରେ ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠା ଏକ ଆଦ୍ୟ ପରିକଳ୍ପନା ପରି ମନେହୁଏ । ଏହି ସବୁ ପରୀକ୍ଷାର ଇତିହାସ ସଙ୍କଳନରେ ସେବାଗ୍ରାମ, ଜାମିଆ ମିଲିଆ ଇସ୍‌ଲାମିଆ, ଶାନ୍ତିନିକେତନ ଆଦି ଜାତୀୟ ଶିକ୍ଷା ତୀର୍ଥର ଶିଅ ବାହାର କଲାବେଳେ ସତ୍ୟବାଦୀ ବିଦ୍ୟାଳୟ, ପରୀକ୍ଷା ନିରୀକ୍ଷା ଆଦି ସବୁ ପ୍ରଥମେ ମନକୁ ଆସେ ।

ସ୍ୱଦେଶୀ ଭାବନା, ସ୍ୱ-ନିୟନ୍ତ୍ରଣ ଓ ସ୍ୱାଭିମାନରୁ ଜନ୍ମ ନିଏ ସ୍ୱାଧୀନ ହେବାର ଦୁର୍ବାର ବାସନା । ପରାଧୀନତାରୁ ମୁକ୍ତ ହୋଇ ପ୍ରାଣର ମୂର୍ଚ୍ଛନା ପୁଷ୍ପିତ, ଅପ୍ରତିହତ ଏବଂ ଏକାତ୍ମ ହୁଏ । ଏହାହିଁ ସର୍ବଜନ ସ୍ୱାଧୀନତା ସଂଗ୍ରାମ ନାମରେ ପରିଚିତ ଏବଂ ଭାରତରେ ଏହା ଅନନ୍ୟସାଧାରଣ, କାରଣ ସତ୍ୟାଗ୍ରହ ଏହାର ସାଧନ । ଏହାର ବିପ୍ଳବ ହୃଦୟରେ; କିନ୍ତୁ ହାତାହାତି ବା ହାତହତିଆରରେ ନୁହେଁ, ଫଳ ହୁଏ ସଦ୍ଭାବସ୍ଥାନ; କିନ୍ତୁ ଶତ୍ରୁତା ନୁହେଁ । ଭାରତର ଏହି ପରୀକ୍ଷା ଆଜି ବିଶ୍ୱର ଏକ ପ୍ରତିଷ୍ଠିତ ପ୍ରୟୋଗ । ଏହା ଜାଗ୍ରତ ଲୋକ ଶକ୍ତିର ସମୃଦ୍ଧ ଆନ୍ଦୋଳନ, ସବୁ ଭାରତର ଓ ସମସ୍ତଙ୍କର ବୀରତ୍ୱର କାହାଣୀ ଲୋମହର୍ଷଣକାରୀ ଓ ଏହାର ଶପଥ ଜୀବନ ବିସର୍ଜନ । ଏ ଦିଗରେ ତଥା ପ୍ରଥମ ସୂତ୍ରପାତରେ ଓଡ଼ିଶାର ଦାନ ଓ ଆଦାନପ୍ରଦାନ ଇତିହାସ ପୃଷ୍ଠାରେ ସ୍ମରଣୀୟ ହୋଇ ରହିଛି । ଗବେଷକ ସତ୍ୟେ-ନାରାୟଣ ରାଜଗୁରୁ (ଉତ୍କଳ ପ୍ରସଙ୍ଗ, ସୁରେନ୍ଦ୍ର ସାଏ ବିଶେଷାଙ୍କ, ଏପ୍ରିଲ ୧୯୮୪)ରେ ଉପସଂହାର କରନ୍ତି—ସମସ୍ତ ଭାରତରେ ସିପାହି ବିଦ୍ରୋହ ପୂର୍ବରୁ ଓଡ଼ିଶାରେ ପ୍ରଥମେ ସ୍ୱାଧୀନତା ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଝାନ୍‌ସୀର ରାଣୀ ଦୁର୍ଗାବାଈଙ୍କ ପରି ପାରଳାର ଗଜପତି ପାଟ ମହାଦେବୀ ଏବଂ ତାନ୍ତିଆ ଟୋପୀଙ୍କ ଭୂମିକାରେ ଓଡ଼ିଶାର ଜଗବନ୍ଧୁ ବିଦ୍ୟାଧର, ସୁରେନ୍ଦ୍ର ସାଏ, ଦୋରାବିଶୋୟୀ, ଗୁଡ଼ିଆପାତି ପ୍ରଭୃତି ସ୍ୱାଧୀନତା ପ୍ରେମୀ ଓଡ଼ିଆ ବୀରମାନଙ୍କ ଅଭୂତ ଆତ୍ମଯୋଗ ଏ ଜାତିର ଇତିହାସରେ ଚିର ସ୍ମରଣୀୟ ହୋଇ ରହିବ । ଏହି ଭୂମିର ଝଲକ ରୂପ ନେଇଛି ଭାରତୀୟ ବହ୍ନିରେ ଓ ଏଥିପାଇଁ ଇନ୍ଧନ ଯୋଗାଣର ଚିରନ୍ତନ ସହଯୋଗରେ ଉତ୍କଳର ଭୂମିକା ଉଲ୍ଲେଖନୀୟ ।

ଏହି ବହୁଦିଗପ୍ରସାରୀ ଗଭୀର ଆଲୋଚନାର ପରିସରକୁ ଏକ ପ୍ରବନ୍ଧ ମଧ୍ୟରେ ସୀମିତ କରିବା ଦୃଷ୍ଟିରୁ ଗଭୀରତା ଓ ପ୍ରସରର ଦ୍ୱନ୍ଦ୍ୱ ସ୍ୱତଃ ଉପସ୍ଥିତ ହୁଏ । କୌଣସି ଯୁକ୍ତଯୁକ୍ତତା ପ୍ରତି ଦୃଷ୍ଟି ନଦେଇ ପ୍ରସରକୁ ଅଗ୍ରାଧିକାର ଦିଆଗଲେ ତାହା ମଧ୍ୟ ସୀମାହୀନ ଜଣାପଡ଼େ । ସେଥିରେ ମଧ୍ୟ ଅଧିକ ଅଗ୍ରସର ହେବାର ପ୍ରଲୋଭନରୁ କ୍ଷାନ୍ତ ରହି ଏକ ଶେଷ, କିନ୍ତୁ ସମ୍ଭବତଃ ଶ୍ରେଷ୍ଠ ଦିଗ ବିଷୟରେ ଯତ୍‌କିଞ୍ଚିତ୍ ଆଲୋଚନା ଉପସଂହାରରେ କରିବା । ଏହା ହେଉଛି ଜୀବନର ଧାର୍ମିକ ଦିଗ, ଯେଉଁଥିରେ ମାନବ ମାନେ ଏକାନ୍ତ ତଥା ଏକନିଷ୍ଠ ଚିତ୍ତରେ ଅଭିନିବିଷ୍ଟ ରହନ୍ତି । ଭାଷା ବିଭିନ୍ନ ହେଉ ବା ଭାଷା ଅସ୍ପଷ୍ଟ କିମ୍ବା ଅଜଣା ହେଉ, ଜୀବନର ଏହି ତନ୍ତ୍ରୀଟି ସଦା ଶବ୍ଦାୟମାନ । ବ୍ୟାକୁଳତା, ବ୍ୟଥା, ବିଷାଦ ଓ ବିରହରେ ଏହା ସତତ ମୁଖରିତ । ହର୍ଷ, ଉଲ୍ଲାସ ଓ ଉତ୍‌ଫୁଲ୍ଲତାରେ ଏହି ତନ୍ତ୍ରୀ ସ୍ପଷ୍ଟ ଭାବରେ ଅସ୍ପଷ୍ଟ ।

ଏକ ସ୍ପନ୍ଦନର ନିବେଦନ ଏହାର ଲକ୍ଷଣ ଓ ତେଣୁ ଏହା ସାଂପ୍ରଦାୟିକ ନୁହେଁ । ଏହା ଜୀବନର ଜୀବନ୍ତ ବୃତ୍ତି ଓ ଜୀବମାତ୍ରେ ସେହି ଜୀବନର ଜୀବ ପ୍ରତି ଉନ୍ମୁଖ । ଏ ଦୃଷ୍ଟିରୁ ବିଚାର କଲେ ଉତ୍କଳ ଏକ ସମନ୍ୱୟର ପୀଠ ହୋଇ ଯୁଗେ ଯୁଗେ ଭାରତୀୟ ସମନ୍ୱୟ ଧାରାକୁ ପ୍ରଭାବିତ ଓ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ ଆପଣା ବକ୍ଷରେ ସମନ୍ୱୟର ଧାରାକୁ ଭାଗବତକାରଙ୍କ ନିମ୍ନୋକ୍ତ ଭାଷାରେ ଶାଣିତ ଓ ବଳିଷ୍ଠ କରିଛି ।

"ଦେଖ ଏ ଯେତେ ନଦନଦୀ, ପ୍ରବାହେ ମିଳନ୍ତି ଜଳଧି ।
ଆପଣା ଗୁଣ ପାସୋରନ୍ତି, ଲବଣ ଗୁଣକୁ ଭଜନ୍ତି ।"

ଚତୁର୍ଦ୍ଧାମ ମଧ୍ୟରୁ ଉତ୍କଳର ପୁରୁଷୋତ୍ତମ ଧାମ ଅନ୍ୟତମ ଓ ଧାମଚତୁଷ୍ଟୟ ଭାରତର ସାଂସ୍କୃତିକ ଏକାତ୍ମତା ରକ୍ଷା କରିବା ଦିଗରେ ଆଲୋକବର୍ତ୍ତିକା ସଦୃଶ ଚିର ଜାଜ୍ୱଲ୍ୟମାନ । ଆବଶ୍ୟ ଆମର ପ୍ରାର୍ଥନା ହେଉଛି, "ଆନୋ ଭଦ୍ରା କ୍ରତବୋଯନ୍ତୁ ବିଶ୍ୱତଃ" ଏବଂ ଆମର ଜୀତ ହେଉଛି, "ଏକଂ ସତ୍ ବିପ୍ରାଃ ବହୁଧା ବଦନ୍ତି ।" ସତ୍ୟାନୁସନ୍ଧାନୀ ଆମେ, ଆଗେଇ ଚାଲୁ ଉନ୍ମୁକ୍ତ ମନରେ । ସମସ୍ତ ବିଚାର ଧାରାକୁ ଆମେ ଆବାହନ କରୁ ଓ ଆଲିଙ୍ଗନ କରୁ ପୂର୍ଣ୍ଣ ପ୍ରାଣରେ । ଏ ପ୍ରକାର ସହନଶୀଳତା, ସହିଷ୍ଣୁତା ଓ ଉଦାରତାର ପରିବେଶ ଉତ୍କଳୀୟ ଦେବ-ଜଗତର ନାଥ, ଜଗନ୍ନାଥଙ୍କୁ ବିଭିନ୍ନ ସମୟରେ ବିଷ୍ଣୁ, କୃଷ୍ଣ, ରାମ, ବାମନ, ନରସିଂହ, ବୁଦ୍ଧ ଓ ଜିନଙ୍କ ସଙ୍ଗେ ଏକୀକୃତ କରାଯାଇ ଧାର୍ମିକ ଐକ୍ୟର ପ୍ରତୀକ ଭାବରେ ସେ ଉପାସ୍ୟ ହୋଇଆସୁଛନ୍ତି । ଆର୍ଯ୍ୟ ଓ ଆର୍ଯ୍ୟେତର ବିଚାର ସ୍ରୋତରେ ତାଙ୍କୁ ସଂଶ୍ଳିଷ୍ଟ କରାଯାଇଛି । ଜଗନ୍ନାଥ ଧର୍ମଧାରା ସହିତ ପରଂପରାକ୍ରମେ ଆଦିବାସୀ ଜୀବନର ସଂପର୍କ କରାଯାଇ ଏକ ମହାନ୍ ଚେତନାର ଉଦ୍ଭବ ଘଟିଛି । ପୁରାଣ ବର୍ଣ୍ଣିତ ଚଣ୍ଡାଳୁଣୀ ଉପାଖ୍ୟାନରେ ଲକ୍ଷ୍ମୀଙ୍କର ଭୂମିକା ଦ୍ୱାରା ସ୍ୱଚ୍ଛତା, ଅନାବିଳତା ଓ ନିଷ୍କପଟତାର ଉଜ୍ଜ୍ୱଳ ଦୃଷ୍ଟାନ୍ତକୁ ଉଜ୍ଜୀବିତ କରିବା ସଙ୍ଗେ ସଙ୍ଗେ ଜୀବେ ମୈତ୍ରୀର ଆଦର୍ଶ ଆଚରଣ-ସିଦ୍ଧ ହୋଇଛି । ଆହୁରି ମଧ୍ୟ ଉତ୍କଳୀୟ ଉପାସନାର ମହାନ୍ ପୀଠ 'ଶ୍ରୀ ମନ୍ଦିର'ରେ ବଡ଼-ଠାକୁରଙ୍କଠାରେ ସାକାର, ନିରାକାର ଓ ଶୂନ୍ୟବାଦୀମାନଙ୍କର ଅପୂର୍ବ ସଂଯୋଗ ତଥା ସମନ୍ୱୟ ଘଟିଛି । ବହୁ କିମ୍ବଦନ୍ତୀ ଓ ପ୍ରବାଦ ଐତିହାସିକ ତଥ୍ୟ ଏସବୁ ସମନ୍ୱୟଧାରାର ପ୍ରମାଣ ସ୍ୱରୂପ । ମହର୍ଷି ଦେବେନ୍ଦ୍ରନାଥ ଠାକୁର ଆତ୍ମଜୀବନୀ (୧୮୫୧)ରେ ଲେଖିଛନ୍ତି, "ମୋର ଚଶମାଟା ତଳେ ପଡ଼ି ଭାଙ୍ଗିଗଲା । ତାକାର ଜଗନ୍ନାଥ ଆଉ ଦେଖିବାର ସୁବିଧା ହେଲନାହିଁ । ମୁଁ ସେଇ ନିରାକାର ଜଗନ୍ନାଥଙ୍କୁ ହିଁ ଦେଖିଲି । ଏଠାରେ ଗୋଟିଏ ପ୍ରବାଦ ଅଛି, ଯେ ଯାହା ମନରେ ଧରି ଜଗନ୍ନାଥ ମନ୍ଦିରକୁ ଯାଏ, ସେ ତାହା ଦେଖିବାକୁ ପାଏ, ମୋ ନିକଟରେ ତାହା ପୂର୍ଣ୍ଣ ହେଲା ।" ମହାପ୍ରସାଦଲୀଳା ପ୍ରତି ତାଙ୍କ ଦୃଷ୍ଟି ପଡ଼ିଛି ଓ ସେ ଉଲ୍ଲେଖ କରିଛନ୍ତି "ମହାପ୍ରସାଦ ଯେନ ଭାରି ଆନନ୍ଦଚହଳ ପଡ଼ିଗଲା । ଜମାଦାର, ବ୍ରାହ୍ମଣ, ଚାକର, ସମସ୍ତେ ସେଇ ମହାପ୍ରସାଦ, ଏ ତା' ମୁହଁରେ ଓ ସେ ଏଆ ମୁହଁରେ ଦେବାକୁ

ଲାଗିଲେ । ସେତେବେଳେ ବ୍ରାହ୍ମଣ ଓ ଶୂଦ୍ରଭେଦ ଆଉ ରହିଲା ନାହିଁ । ସମସ୍ତେ ଏକତ୍ର ଖାଇ ଆନନ୍ଦଲାଭ କଲେ । ଓଡ଼ିଆ ଜାତି ଧନ୍ୟ, ସେ ଏହି ବିଷୟରେ ସମସ୍ତଙ୍କୁ ଜିତି-ଯାଇଛି । ସେ ସକଳ ଜାତିକୁ ଏକ କରି ନେଇଛି" (ଓଡ଼ିଆ ଭାଷାନ୍ତର, ଅଧ୍ୟାପକ ବୈଷ୍ଣବ ଚରଣ ସାମଲ) । ବସ୍ତୁତଃ ସମଗ୍ର ମାନବ ସମାଜର ଚାରି ଦଣ୍ଡି କୃଷ୍ଣ, ଶ୍ୱେତ, ହରିଦ୍ରା ଓ ଲୋହିତର ସମାହାର ଏବଂ ସମନ୍ୱୟ ବଡ଼ ମନ୍ଦିରରେ ହୋଇଥିବାରୁ କବି ସମ୍ରାଟ ଗାଇଛନ୍ତି—"ଚାରିବର୍ଣ୍ଣେ ଚୌବର୍ଗ ଦେବାକୁ ସମର୍ଥ ।"

"ଶିଳାକ୍ଷରେ ଯହିଁ ଜୀବେ ମୈତ୍ରୀ ଘୋଷିତ ଅଶୋକ ସାମ୍ରାଜ୍ୟେ"

ଭକ୍ତକବି ମଧୁସୂଦନଙ୍କର ଏହି ଉକ୍ତି ଉତ୍କଳର ପବିତ୍ର ପୀଠରେ ଏ ଯାଏଁ ଉଦ୍‌ଘୋଷିତ ଜୀବେଦୟା ବୋଧ ଉତ୍କଳୀୟ ଧର୍ମଜୀବନର ମମତା ଓ ମାୟାର ବନ୍ଧନ ହୋଇଛି । ଊନବିଂଶ ଶତାବ୍ଦୀରେ ବ୍ରାହ୍ମଧର୍ମର ଅଭ୍ୟୁଦୟ ଘଟିଛି ଏବଂ ପ୍ୟାରିମୋହନ, ବିଶ୍ୱନାଥ, ମଧୁସୂଦନ ପ୍ରମୁଖ ମନୀଷୀଗଣ ଉତ୍କଳର ଏହି ଚିନ୍ତାଧାରାକୁ ପ୍ରବାହିତ କରିଛନ୍ତି । କିନ୍ତୁ ସେହି ବିଶ୍ୱଭାବନା ପୁଣ୍ୟାତ୍ମା ପଣ୍ଡିତ ଗୋପବନ୍ଧୁ ସେବା ମାଧ୍ୟମରେ ପ୍ରତି ପ୍ରାଣରେ ରୂପାୟିତ କରିଛନ୍ତି ଓ ତାଙ୍କ ଲେଖନୀରେ ପ୍ରକାଶ ପାଇଛି—

"ଭାରତର ପ୍ରତି ବୃକ୍ଷ କଳ୍ପବଟ / ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ଉତ୍କଳେ ନେତାର ନାହିଁ ପ୍ରୟୋଜନ / ଉତ୍କଳର ନେତା ସ୍ୱୟଂ ନାରାୟଣ ।"

ଏହି ପରିପ୍ରେକ୍ଷୀରେ ପ୍ରାକ୍ ଐତିହାସିକ ଯୁଗର ବିଶୁଦ୍ଧାତ୍ମ ଜ୍ଞାନ ଭକ୍ତିଯୋଗ ଆଧାରିତ ଆଦିସତ୍ୟ ସନାତନ ଧର୍ମଧାରାର ପ୍ରବାହ ଆକସ୍ମିକ ଭାବରେ ଇତିହାସର ପୃଷ୍ଠା ଉଦ୍‌ଘାଟନ କରେ ଜମ୍ବୁଦ୍ୱୀପ ଉତ୍କଳ ଭୂଖଣ୍ଡରେ । ସନ୍ଥକବି ଭୀମଭୋଇ ସେହି ଉପଲକ୍ଷ୍ୟରେ ଭଜନ ଲେଖିଲେ—

"ଅଣ ଆକାର ତା ଦେହି / ନିତ୍ୟେ ଅଛୁ ଉଦେ ହୋଇ
ପୂରିଛୁ ସକଳ ଦେହି / ଅନୁବ୍ରତେ ଖୋଜ ତାଙ୍କୁ ।"

ସେ ହେଉଛନ୍ତି ମହିମାଧର୍ମର ସଂସ୍ଥାପକ ମହିମାସ୍ୱାମୀ । ହିମାଳୟ ଗିରି କନ୍ଦରରେ ତାଙ୍କର ଅଲୌକିକ ଆବିର୍ଭାବ । ଅନନ୍ତକୋଟି ବିଶ୍ୱବ୍ରହ୍ମାଣ୍ଡର ପାପତାପ ସ୍ୱଅଙ୍ଗରେ ଗ୍ରହଣ କରି ପ୍ରତ୍ୟେକ ପ୍ରାଣୀ, ପରିବାର, ପୁରପଲ୍ଲୀକୁ "ଏକଂ ନିତ୍ୟଂ ବିମଳଂ ଅଚଳଂ ସର୍ବଧୀଃ ସାକ୍ଷୀଭୂତଂ" ପରବ୍ରହ୍ମଙ୍କ ସଚେତନାରେ ଚେତାଇ ଦେବାର ପ୍ରୟାସରେ ୧୮୨୬ ମସିହାରେ ପବିତ୍ର ବଡ଼ଦାଣ୍ଡରେ ଦେଶଦେଶାନ୍ତର ଭ୍ରମଣାନ୍ତେ ଲୋକଲୋଚନକୁ ଆସନ୍ତି ଧୂଳିଆଗୋସାଇଁ । ଶ୍ରୀମଦ୍‌ଭାଗବତ୍ କଥିତ ଅବଧୂତ ପରମେଶ୍ୱର ଜାତି-ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସଂପୂର୍ଣ୍ଣ ବଡ଼ିମା ବିମୋଚିତ ତ୍ୟାଗ ଧର୍ମରେ ପ୍ରକାଶ ପାଏ ମାନବାତ୍ମାର କଲ୍ୟାଣ ପାଇଁ ସମସ୍ତ ବାହ୍ୟାଡ଼ମ୍ବର ଶୂନ୍ୟ ଜୀବନ ଧର୍ମୀ ପ୍ରବାହର ପ୍ଲାବନ ଖୋଜିବୁଲେ ଅନାବରଣ ସ୍ଥାନ, ଅନାମ ନାମ, ଅଜପାଜପ ଓ ବିଶୁଦ୍ଧ ଚେତେଚେତନା । ସମସ୍ତଙ୍କର

ବିଶ୍ୱାସ ରହେ ଏକ ପ୍ରଭୁ ପରଂବ୍ରହ୍ମଙ୍କଠାରେ ଓ ବିଶ୍ୱ କଲ୍ୟାଣ ହିଁ ଏକମାତ୍ର ସାଧନ ଓ ଭଜନ ।

ଯୁଗେ ଯୁଗେ ଉତ୍କଳର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଇତିହାସ ସମଭାବାପନ୍ନତା, ସହିଷ୍ଣୁତା ଓ ଉଦାର ମାନବ ପ୍ରେମର ବାର୍ତ୍ତାରେ ପ୍ରତ୍ୟାସ୍ତ ହୋଇ ଆଧୁନିକ ସମସ୍ତ ପର୍ଯ୍ୟନ୍ତ ଗତି କରିଆସିଛି । ଭାରତୀୟ ଚେତନାରୁ ଅଭିନ୍ନ ରହି ସ୍ୱକୀୟ ମୌଳିକତା ପରିପୁଷ୍ଟ ହୋଇଛି ଓ ଭାରତର ସମୃଦ୍ଧ ସୌରଭ ବିଶ୍ୱବ୍ୟାପୀ ହୋଇଛି । ଦଳର ବିଭିନ୍ନତା ମଧ୍ୟରେ ଏକ କମଳ ହେଉଛି ଜନନୀରୂପୀ ଜନ୍ମଭୂମି । ଏହା ସମସ୍ତଙ୍କଠାରୁ ବଡ଼, ବଡ଼ ମଧ୍ୟ ସ୍ୱର୍ଗଠାରୁ । ଶ୍ରୀରାମଚନ୍ଦ୍ର ନିଜ ମନୋଭାବ ପ୍ରକାଶ କରିଛନ୍ତି—

"ନ ମେ ରୋଚତେ ଲକ୍ଷ୍ମଣ ଅପି ସ୍ୱର୍ଣ୍ଣମୟୀ ଲଙ୍କା
ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।"

ସେହି ଅନୁରକ୍ତିରେ ଭକ୍ତକବି ମଧୁସୂଦନ କମଳ ପ୍ରତି ଯେଉଁ ନିବେଦନ କରିଛନ୍ତି, ତାହାହିଁ ଆମ ମୌଳିକତାର ମହତ୍ତ୍ୱପଣିଆ ହେଉ—

"ପଙ୍କଜ ଅଟୁ ତୁହି ତେଣୁ ଭରସା / ତୋ ପରି ଶୁଦ୍ଧହେବି ଲଭି ସୁଦଶା ।
ଶିଖାଅ ମୋତେ ସଦା ପୁଣ୍ୟବ୍ରତ / ତୋର ଆଶିଷେ ପୂରୁ ମୋ ମନୋରଥ ।

———

# ଆଧ୍ୟାତ୍ମିକ ଶିକ୍ଷା

ସନ୍ତାନଟିଏ ଜନ୍ମ ହେବାମାତ୍ରେ ସେ କୁଟୁମ୍ବର କୋହିନୂର । ଜନନୀଙ୍କଠାରୁ ଝରିଆସେ ସ୍ନେହର ଅବାରିତ ସ୍ରୋତ । ବୁଦ୍ବୁଦ୍ବତ୍ ଆଶା ଓ ହସ ଉର୍ମିମାଳରେ ଏପରି ଏକ ଭଙ୍ଗିରେ ଯାହାର ପଟାନ୍ତର ନାହିଁ ଓ ଯାହାର ପ୍ରକାଶ ଅନ୍ୟତ୍ର ନାହିଁ । ଅନାବିଳ ଓ ଅବ୍ୟକ୍ତ ସ୍ନେହର ଧାରା । ସମଗ୍ର ବିଶ୍ୱର ବହୁବିଧ ବିଭିନ୍ନତା ମଧ୍ୟରେ ଜୀବନର ଅଭାବ, ଅନଟନ ଓ ଅସହାୟତାର ମାତ୍ରା ଯେତେ ଅଧିକ ହେଉ ପଛକେ ସ୍ନେହର ସୁଧା ସର୍ବତ୍ର ବିଦ୍ୟମାନ । ପରମ ପବିତ୍ର ଓ ଏହାପରି ପାରମାର୍ଥିକ ଭାବ ଅନ୍ୟତ୍ର ବିରଳ । ଏହା ହିଁ ବାତ୍ସଲ୍ୟ । ପଶୁପକ୍ଷୀଙ୍କ ପରି ଇତର ପ୍ରାଣୀଙ୍କଠାରୁ ଆରମ୍ଭ କରି ମାନବ ଜୀବନର ସର୍ବୋତ୍ତମ-ସୃଷ୍ଟି ପର୍ଯ୍ୟନ୍ତ ବାତ୍ସଲ୍ୟର ପ୍ରାଚୁର୍ଯ୍ୟ ସର୍ବତ୍ର ମଧୁମୟ ହୋଇଥାଏ । ଏଠି ଜାତି, ଧର୍ମ, ଗୋତ୍ର, ବର୍ଣ୍ଣ ଓ ସମ୍ପ୍ରଦାୟର ବିଚାର ନାହିଁ । ପୁତ୍ର ଓ କନ୍ୟା ମଧ୍ୟରେ ପାର୍ଥକ୍ୟ ନାହିଁ । ଜୀବଜଗତରେ ବାତ୍ସଲ୍ୟ ମମତା ଚିରନ୍ତନ ହୋଇ ରହିଛି । ଭିନ୍ନ ବ୍ୟବହାର ହେତୁ ବିଭିନ୍ନ ମାତ୍ରାରେ ଏହା ଅବ୍ୟକ୍ତ ଓ ବ୍ୟକ୍ତ ହୋଇଥାଏ । ସ୍ନେହ ଦେବା ସଙ୍ଗେ ସଙ୍ଗେ ଜନନୀଙ୍କୁ ମିଳିଥାଏ ଦେବଭୋଗ୍ୟ ଆନନ୍ଦ । କୁଆଁ କୁଆଁ କାନ୍ଦ ସମସ୍ତଙ୍କ ହୃଦୟରେ ଅପୂର୍ବ ଆନନ୍ଦର ତରଙ୍ଗ ସୃଷ୍ଟି କରେ । ଏହି କାନ୍ଦର ତରଙ୍ଗ ଆଣିଦିଏ ଶିହରଣ । ଚକ୍ଷୁର ପଲକ ତଥା ଓଠର ଚଞ୍ଚଳତାରେ ଜନନୀଙ୍କୁ ମିଳିଥାଏ କାବ୍ୟ ଓ କବିତାର ରସାସ୍ୱାଦନ । ସେ ରସ ଅନାବିଳ ଓ ଅନବଦ୍ୟ । ଏହା ମଧ୍ୟ ଅବର୍ଣ୍ଣନୀୟ । ମନୋବିଜ୍ଞାନୀଙ୍କ ମତରେ ଶିଶୁର ଏସବୁ ପ୍ରତିକ୍ରିୟା ସ୍ୱାଭାବିକ । ତଥାପି ଏସବୁ କ୍ରନ୍ଦନ ମାତୃସ୍ନେହର ଧାରକୁ ବହୁଗୁଣିତ କରିଥାଏ ।

ଶିଶୁ ଜନ୍ମରୁ କେବେହେଁ ସ୍ୱାର୍ଥପର ବା ନିଃସ୍ୱାର୍ଥ ନୁହେଁ । ଦେବା ଓ ନେବାର ସ୍ୱାଭାବିକ ନିୟମସୂତ୍ର ପଛରେ କାହାର ପରିଚାଳନା ନଥାଏ । ଅନ୍ୟ କିଛି ପ୍ରାପ୍ତି ଆଶାରେ ଏହା ପରିଚାଳିତ ହୁଏ ନାହିଁ । ସ୍ନେହ ନେବା ଯେପରି ପ୍ରବଳ, ସ୍ନେହ ଦେବା ସେପରି ବଳିଷ୍ଠ । ଶିଶୁ ଜୀବନର ପରବର୍ତ୍ତୀ କାଳରେ ମଧ୍ୟ ଶିଶୁ-ଅଧ୍ୟୟନରତ ବିଜ୍ଞାନୀମାନେ ପ୍ରମାଣ କରନ୍ତି ଯେ ଦେବାର ଇଚ୍ଛାପରି ନେବାର ଇଚ୍ଛା ମୌଳିକ (The will to give is a fondamental as the will to receive) । ଏସବୁ ଆତ୍ମାର ପରିପ୍ରକାଶ ମାତ୍ର । ଶିଶୁ ସର୍ବଦା ନିରହଙ୍କାର, ନିର୍ଲିପ୍ତ ଓ ନିର୍ବିକାର । ପରସ୍ପରର ପରିଚୟ ଶିଶୁର ନଥାଏ । ସମସ୍ତେ ଶିଶୁର ଆପଣାର ଓ ସେ ବି ନିଜେ ସମସ୍ତଙ୍କର । ସେହି କାରଣରୁ ଭାରତୀୟ ଅବଧୂତ ପରମ୍ପରାରେ ଶିଶୁ ଅନ୍ୟତମ ଗୁରୁ ରୂପେ ଗୃହୀତ ।

"ଶିଶୁର ନାହିଁ ପରାପର, ସକଳ ଦେଖଇ ଈଶ୍ୱର ।" ଅନାବିଳତାର ଲବଣିପିତୁଳା ହୋଇଛି ଶିଶୁ । ସୃଷ୍ଟିର ଏହି ଚରମ ସତ୍ୟଟି ଏଠି ଅଚରେ ପ୍ରତିଭାତ ।

ଏହାପରେ ଆସିଯାଏ ଧୂଳିଖେଳର ବେଳ । ଖେଳ-ବିହ୍ୱଳ ଶିଶୁର ଭେଦଜ୍ଞାନ ରହେ ନାହିଁ । ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାରେ ଖେଳ; ତଥା ସମ୍ଭବତଃ ଶୟନରେ ମଧ୍ୟ ଖେଳ । ଧନ ଓ ଗରିବର ପାର୍ଥକ୍ୟ ବି ଅସ୍ପଷ୍ଟ ହୋଇଯାଏ । ଜାତି, ବର୍ଣ୍ଣ, ଧର୍ମ ଆଦି ଭେଦଜ୍ଞାନ-ରହିତ ଶିଶୁ ସମୀପରେ ସବୁ ଏକାକାର ହୋଇଯାଏ ଖେଳ ମାଧ୍ୟମରେ । ତେଣୁ କ୍ରୀଡ଼ା ହିଁ ଅନ୍ତରର ଅମୃତତ୍ୱକୁ ପ୍ରକାଶ କରିବାର ଏକ ସହଜ ମାଧ୍ୟମ ରୂପେ ପରିଗଣିତ ହୁଏ । ଖେଳାଳି ଏଥିରେ ଆତ୍ମହରା ହୋଇଯାଏ । ଅସ୍ମିତା କ୍ରୀଡ଼ାରେ ବିଲୀନ ହୋଇ ରହେ । ଶୈଶବୋତ୍ତର କାଳରେ ସ୍ୱୀକୃତି, ପୁରସ୍କାର, ପ୍ରଶଂସାଦି କ୍ରୀଡ଼ାବହିର୍ଭୂତ ପ୍ରଲୋଭନ କ୍ରୀଡ଼ାରେ ପ୍ରେରଣା ସୃଷ୍ଟି କରେ; କିନ୍ତୁ ଶିଶୁର ସମସ୍ତ ଆନନ୍ଦ ଶୈଶବକାଳୀନ କ୍ରୀଡ଼ାରେ ଅନ୍ତର୍ନିହିତ ହୋଇଥାଏ । ପିତାମାତାଙ୍କ ଦ୍ୱାରା ପ୍ରେରିତ ବା ଆରୋପିତ ସମସ୍ତ କର୍ମ କ୍ରୀଡ଼ା ଭଙ୍ଗରେ କରାଯାଏ । ବସ୍ତୁତଃ କ୍ରୀଡ଼ା ଓ କର୍ମ ପୃଥକ୍ ରହେ ନାହିଁ ।

ଏହିପରି ବୟସ ବଢ଼ିଯାଏ । ଶିଶୁର ଅଖଣ୍ଡ ବ୍ୟକ୍ତିତ୍ୱ କ୍ରମେ ଦେହ, ମନ, ବୁଦ୍ଧି, ଅହଙ୍କାର ଆଦି ଦ୍ୱାରା ଖଣ୍ଡିତ ହୁଏ । ଇନ୍ଦ୍ରିୟାଦି ମାଧ୍ୟମରେ ଜ୍ଞାନ ଗ୍ରହଣ କରାଯାଏ । ପରିବେଶରୁ ବିକଶିତ ହୁଏ ଜ୍ଞାନରାଶି । ଏହା ପରେ ବହିର୍ମୁଖିତାର ବିକାଶ ଘଟେ । ଅନ୍ତର୍ମୁଖିତାର ମାତ୍ରା କ୍ରମେ କମିଯାଉଥାଏ । ପୁସ୍ତକ ପାଠ ଓ ଅନ୍ୟାନ୍ୟ ଅଧ୍ୟୟନ ଏହି ମାରାତ୍ମକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରେ । ନିଜକୁ ନଜାଣି ଓ ନଚିହ୍ନି ଅନ୍ୟମାନଙ୍କୁ ଓ ଅନ୍ୟ ସବୁକୁ ଜାଣିବା ଓ ଚିହ୍ନିବାରେ ଆନନ୍ଦ ମିଳେ ଓ ଆଗ୍ରହ ବଢ଼ିଯାଏ । ଛାନ୍ଦୋଗ୍ୟ ଉପନିଷଦରେ ନାରଦଙ୍କ ଅଶାନ୍ତିର ନିରାକରଣ ପାଇଁ ସନତ୍କୁମାର କହିଛନ୍ତି—"ନାମେବ ତତ୍"—ସେସବୁ ନାମ ମାତ୍ର । ନାମ ଯେଉଁ ନାମଧାରୀଙ୍କ ସୂଚନା ଦିଏ, ତାଙ୍କୁ ଜାଣିବା ଓ ଚିହ୍ନିବା ଉଚିତ । ପ୍ରକୃତି ଅଧ୍ୟୟନ ଦ୍ୱାରା ପ୍ରକୃତିର ନିୟନ୍ତାଙ୍କ ବିଷୟରେ ପ୍ରଶ୍ନବାଚୀ ହେବା ଉଚିତ । ଫୁଲର ରୂପ, ବର୍ଣ୍ଣ ଓ ସୁବାସ ମନୁଷ୍ୟ କୃତ କି ? ଫଳର ସୃଷ୍ଟି ଓ ଏହାର ସ୍ୱାଦ ଓ ରସ ମନୁଷ୍ୟାତୀତ କାର୍ଯ୍ୟ । ଗଠନ ଓ ଅଙ୍କନ କଳାଦ୍ୱାରା ମନୁଷ୍ୟ ପ୍ରକୃତିକୁ ଅନୁକରଣ କରେ ସତ; ଏହି ଅନୁକରଣ ଏପରି ମୌଳିକ ହୋଇଯାଏ ଯେ ମନରେ ବିସ୍ମୟ ଜାତ କରେ, କିନ୍ତୁ ଯେତେ ଚତୁରତା ସହକାରେ ଏହା କରାଗଲେ ହେଁ, ଅନୁକରଣ କେବେ ହେଁ ମୌଳିକ ହୋଇପାରେ ନାହିଁ । ପ୍ରକୃତିର ସୃଷ୍ଟି, ପ୍ରକ୍ରିୟା ଓ ସ୍ରଷ୍ଟାଙ୍କ ବିଷୟରେ ଆମ୍ଭେମାନେ ଅନୁସନ୍ଧିତ୍ସୁ ଓ ସଚେତନ ହେବା ଉଚିତ । ବୟସ ବୃଦ୍ଧି ସଙ୍ଗେ ଦେହରେ ଶୋଭା ମଧ୍ୟ ପ୍ରକାଶ ପାଏ । ମନୁଷ୍ୟର ବର୍ଣ୍ଣ ଯାହା ହେଉ ପଛକେ ତାହାର ଶୋଭା ହେତୁ ସେ ମନୋଲୋଭା ହୋଇପଡ଼େ । ହଳଦୀ, ତେଲ, କଳା, ସାବୁନ ଓ ଅନ୍ୟ ପ୍ରସାଧନସାମଗ୍ରୀ ପିତା-ମାତାଙ୍କ ଆର୍ଥନୀତିକ ଅବସ୍ଥା ଅନୁସାରେ ଯୋଗାଇଦିଆଯାଏ । ଲୁଗାପଟା, ଅଳଙ୍କାର ଆଦି

ଆଭୂଷଣ ଶରୀରର ଶୋଭାକୁ ବୃଦ୍ଧି କରିଥାଏ । ଖାଦ୍ୟପେୟାଦି ବପୁବଳ ବୃଦ୍ଧିରେ ସାହାଯ୍ୟ କରେ । ଶିକ୍ଷାଯତନରେ ଶରୀର ବୃଦ୍ଧି ପାଇଁ ଯତ୍‌କିଞ୍ଚିତ୍ ଯତ୍ନ ନିଆଯାଏ । ବ୍ୟାୟାମ କରିବାକୁ ପଡ଼େ ଓ ଏଥିପାଇଁ ଉପଦେଶ ଦିଆଯାଏ । ଯେଉଁ ଶିଶୁ ଦିନେ କଳା କୁକୁରଟିଏ ଦେଖି ମା' ପଣତକାନରେ ମୁହଁ ଲୁଚାଉଥିଲା ସେ କିଶୋର ବୟସରେ କଳାବାଲୁକୁ ଅକ୍ତିଆର କରିବାକୁ ଆଗେଇ ଆସେ । ଏହା ବପୁବଳ, ବାହୁବଳ । ଅରଣ୍ୟର ପଶୁ ଏହି ବଳରେ ବଳୀୟାନ୍ । ତେଣୁ ସେମାନେ ହିଂସ୍ର ଓ ହିଂସା ଆଚରଣ କରି ଜଙ୍ଗଲି ଜୀବନ ସାର୍ଥକ କରନ୍ତି । ଶୁଣାଯାଏ ଯେ ରାକ୍ଷସମାନଙ୍କର ଏପରି ବଳ ମଧ୍ୟ ଥାଏ । ମନୁଷ୍ୟ ନିଶ୍ଚିତ ଭାବରେ ଦାନବଠାରୁ ଉତ୍କୃଷ୍ଟ, କାରଣ ସେ ବିବେକୀ ମାନବ । "ଆତ୍ମଜ୍ଞାନ, ସର୍ବଜ୍ଞାନ ସଭ୍ୟତାର ପରିମାପକ ।" ବସ୍ତୁତଃ ମାନବ ଏହି ଆତ୍ମଜ୍ଞାନ ବଳରେ ସମସ୍ତ ସତ୍ୟର ଉପଲବ୍‌ଧି କରିପାରେ । ବାହୁବଳର ପ୍ରୟୋଗ ଦ୍ୱାରା ମନୁଷ୍ୟର ମନୁଷ୍ୟତା ପ୍ରକାଶ ପାଏ ନାହିଁ କିମ୍ବା ପ୍ରସ୍ଫୁଟ ହୁଏ-ନାହିଁ । କେବଳ ଆତ୍ମବଳ ହିଁ ମନୁଷ୍ୟର ସମସ୍ତ ଶକ୍ତିର ନିୟାମକ ଓ ପ୍ରେରକ । ତେଣୁ ଶାରୀରିକ ଶକ୍ତିର ବିକାଶ ଘଟିବା ସଙ୍ଗେ ସଙ୍ଗେ ମନୁଷ୍ୟର ଆତ୍ମଜ୍ଞାନ ଓ ଆତ୍ମ ଶକ୍ତିର ବିକାଶ ସାଧିତ ହେବା ଉଚିତ ।

ଶିକ୍ଷା କାଳକ୍ରମେ ଅଗ୍ରଗତି କରିଗଲେ । ପରିବେଶର ପରିସୀମା ବଢ଼େ । ଏ ସମ୍ବନ୍ଧୀୟ ଜ୍ଞାନ ଅଧିକରୁ ଅଧିକ ବୃଦ୍ଧିପାଏ । ଏହା ଫଳରେ ମାନସିକ ବିକାଶ ଘଟେ । ମନୁଷ୍ୟ ନେ ଜ୍ଞାନୀ ଏହାର ପରିଚୟ ସେ ଦିଏ । ଅନେକ ତଥ୍ୟ, ସମ୍ବାଦ ଓ ସୂଚନାର ସେ ଅଧିକାରୀ ବୋଲି ପ୍ରମାଣ ଦିଏ ଓ ଏହାଦ୍ୱାରା ସେ ଅନ୍ୟମାନଙ୍କୁ ଚମତ୍କୃତ କରିପକାଏ । ଏହି କ୍ରମରେ ତାର ବୁଦ୍ଧିର ବିକାଶ ଘଟେ । ନିଜ ବୁଦ୍ଧି-ବଳରେ ସେ ଅନ୍ୟମାନଙ୍କୁ ପରାଜିତ କରେ । ଧନ, ମାନ ଓ ଗୌରବରେ ସେ ଅନ୍ୟମାନଙ୍କୁ ଟପିଯାଏ । ନିଜର ମନ, ଜ୍ଞାନ ଓ ବୁଦ୍ଧି ବିଷୟରେ ସଚେତନ ହୁଏ । ଏହାଦ୍ୱାରା ଅହଙ୍କାର ଓ ଅଭିମାନ ତାକୁ ଗ୍ରାସକରେ । ସେ ଅନ୍ୟମାନଙ୍କୁ ପରାଭୂତ କରିବାରେ କର୍ତ୍ତା, ଏହି ଅହଂଭାବ ଆସେ । ବିନୟ ପରିବର୍ତ୍ତେ ବିଜୟର ମୂର୍ଚ୍ଛା ତାର ମନକୁ ମୋହଗ୍ରସ୍ତ କରିପକାଏ । ଜ୍ଞାନକୁ ଚତୁରତା ସହକାରେ ପରିବେଶର ଆବଶ୍ୟକତା ଅନୁସାରେ ନିଜକୁ ସୁହାଇଲା ଭଳି ଓଲଟପାଲଟ କରେ । ଲୋଭ, ମଦ, ମାତ୍ସର୍ଯ୍ୟ ଆଦି ରିପୁକୁଳ ପ୍ରବଳ ହୋଇପଡ଼ନ୍ତି । କ୍ରୋଧ ଓ ଉନ୍ମତ୍ତତା ମାନବ ହୃଦୟରେ ଘୋର ବିପ୍ଳବ ସୃଷ୍ଟି କରନ୍ତି । "ଜ୍ଞାନୀର ମହତ୍ ତତ୍ତ୍ୱ" ଏଠି ପରାଭୂତ ହୋଇଯାଏ । ନିର୍ମଳ ହୃଦୟ, ଧୀରସ୍ଥିର ଚିତ୍ତ ଓ ବିଶୁଦ୍ଧ ବୁଦ୍ଧି କାହିଁ ? ବିନୟ, ନିଃସ୍ୱାର୍ଥତା, ଧୈର୍ଯ୍ୟ ଓ ସହନଶୀଳତା ପ୍ରଭୃତି ଦେବଗୁଣଗୁଡ଼ିକ ଜୀବନର ଅଙ୍ଗ ହେବା ଉଚିତ । "ମୁଁ କର୍ତ୍ତା" ଏହି ଭାବବୋଧତା ପରିବର୍ତ୍ତେ ସମର୍ପଣର ମନୋଭାବ ଜାଗିଉଠିବା ଉଚିତ । ସମର୍ପିତ ମନରେ ନିରନ୍ତର କର୍ମ କରିଯିବାରେ ଅଟଳ ରହିବା ଉଚିତ । ବିଦ୍ୟାଧ୍ୟୟନ କାହିଁ ପାଇଁ ? କେଉଁ ବିଦ୍ୟା ଆମେ ଅଧ୍ୟୟନ କରିବା ? ଏ ବିଷୟରେ ଆଲୋଚନା କରିବା ଦରକାର ।

ଏବେ ପାଠ ସରିଆସେ । ପାଠ କଅଣ ସରେ କି ? ଏହା ସତ୍ତ୍ୱେ ପାଠ ଶେଷ ହୁଏ, କାରଣ ଶିକ୍ଷାୟତନ ଛାଡ଼ିବାକୁ ପଡ଼େ । କର୍ମର ଜଗତରେ ପ୍ରବେଶ କରିବାକୁ ହୁଏ । ଚିର-ଚରିତ ଦୁଇଟି ଧାରା ଏ ଯାଏଁ ଅଳୀକ ଓ ଅପ୍ରାସଙ୍ଗିକ ହେଲେହେଁ ଜୋର୍‌ସୋର୍‌ରେ ଚାଲିଛି । ତନ୍ମଧ୍ୟରୁ ଗୋଟିଏ ହେଲା, ପାଠ ରହିଛି ବିଦ୍ୟାଳୟରେ ଓ ତେଣୁ ବିଦ୍ୟାୟତନକୁ ଛାଡ଼ିଦେଲେ ପାଠ ସରିଯାଏ । ଯେତେଦିନ ଯାଏଁ ଶିକ୍ଷାଳୟରେ ନାମ ଲେଖାଇ ପଢ଼ା-ଯାଉଛି ଓ ପରୀକ୍ଷା ଦିଆଯାଉଛି, ସେ ପର୍ଯ୍ୟନ୍ତ ଛାତ୍ର ଓ ଶିକ୍ଷାର୍ଥୀ ବୋଲି ପରିଚିତ ହେବାକୁ ପଡ଼େ । ଏହା ଆଦୌ ଠିକ୍ ନୁହେଁ । ପ୍ରତ୍ୟେକ ଲୋକ ଆଜୀବନ ଶିକ୍ଷାର୍ଥୀ । ଜୀବ ଥିବାଯାଏ ସେ ଶିଖୁଥିବା ବହୁପାଠ ତୁଣ୍ଡା ଅଧିକ ଏକ ନିର୍ଦ୍ଦିଷ୍ଟ ସମୟରେ ସାରି ଦିଆଯାଇପାରେ । ନିଜ ଜୀବନର ବିଭିନ୍ନ ଆବଶ୍ୟକତା ଅନୁସାରେ ବିବିଧ ଶିକ୍ଷା ଗ୍ରହଣ କରିବାକୁ ପଡ଼େ । ସବୁଠାରୁ ବଡ଼ କଥା ହେଉଛି ନିଜକୁ ଜାଣିବା, ନିଜ ଆତ୍ମାକୁ ଉପଲବ୍ଧି କରିବା ଓ ଅନ୍ୟମାନଙ୍କ ମଧ୍ୟରେ ଏହି ଆତ୍ମା ଅଛନ୍ତି ବୋଲି ଅନୁଭବ କରିବା । ବିଭିନ୍ନ ଦେହ ମଧ୍ୟରେ ଏକ ଅଦେହୀ । ଅଦେହୀଙ୍କ ଅନୁଭବ ହେଉଛି ଦେହାତୀତର ସାଧନା । ଏହି ସାଧନା ଜୀବନବ୍ୟାପୀ । ଦ୍ୱିତୀୟ କଥାଟି ହେଉଛି, ଜ୍ଞାନର ଜଗତ ଓ କର୍ମର ଜଗତ ଅଲଗା ଅଲଗା । ଜ୍ଞାନ ଜଗତରେ କାର୍ଯ୍ୟ ସରିଗଲେ କର୍ମ ଜଗତରେ ପଶିବାକୁ ପଡ଼େ । ଜୀବନରେ ଜ୍ଞାନ ଓ କର୍ମ ଅଲଗା ଅଲଗା ନୁହେଁ । ଜ୍ଞାନ ଓ କର୍ମ ମଧ୍ୟରେ ନିବିଡ଼ ସମ୍ପର୍କ ରହିଛି । ଶ୍ରେଷ୍ଠ ପିଲାଟିଏ ମଧ୍ୟ ପାଠ ପଢ଼ୁଥିବାବେଳେ ତାର ଆଚରଣକୁ ଉନ୍ନତ ଓ ମାର୍ଜିତ କରେ । ପରିବାର ଓ ପାଠ-ଶାଳାରେ ନିଜର ଚାଲିଚଳଣ, ବେଶଭୂଷା, କଥାବାର୍ତ୍ତା ଆଦିକୁ କ୍ରମେ କ୍ରମେ ଭଲକରୁଥାଏ । ସେଥିପାଇଁ କୁହାଯାଏ, "ଯସ୍ତୁ କ୍ରିୟାବାନ୍ ପୁରୁଷଃ, ସ ବିଦ୍ୱାନ୍ ।" ବିଦ୍ୱାନ-ପଣିଆ କହି-ଦେଲେ ହେବ ନାହିଁ । ଚରିତ୍ର ଓ ଆଚରଣରେ ଦେଖାଇବାକୁ ପଡ଼ିବ । ଏଥିରୁ ଜଣାପଡ଼େ ଯେ ଆମ ଲାଳନପାଳନ ଓ ଶିକ୍ଷାଦୀକ୍ଷାରେ ଆମେ ଆତ୍ମସଚେତନତା ପ୍ରତି ଅବହେଳା କରିଛୁ । ଉପରଠାଉରିଆ ହୋଇଯାଉଛୁଁ । କଥା, କାମ ଓ ଚରିତ୍ରରେ ଆମେ ଏକ ହେବା ଉଚିତ । ଯଦି ଆମେ ପରସ୍ପର ବିରୋଧୀ ତିନିପ୍ରକାର ହୋଇଯିବା, ତେବେ ଆମେ ଅବିଭକ୍ତ ନହୋଇ ବିଭକ୍ତ ହୋଇଯିବା । ଆମ ଦେଶର ସାଧୁସନ୍ଥମାନେ ଏହି ଉଦାହରଣ ଦେଖାଇଯାଇଛନ୍ତି । ବେଦାନ୍ତ ଯୁଗରୁ ଏଯାବତ୍ ଆମେ ଅନେକ ହେଲେହେଁ ପ୍ରତ୍ୟେକ ସେହି ଏକ ସତ୍ୟ "କାୟେନ ମନସା ବାଚା" ଏକନିଷ୍ଠ ହେବାର ଆଦର୍ଶ ରକ୍ଷା କରିଛୁ ।

ପ୍ରଚଳିତ ଧାରା କ୍ରମରେ ବିଦ୍ୟାଧ୍ୟୟନ ଶେଷ କରି କର୍ମଜୀବନ ଆରମ୍ଭ କରୁଛୁ । ପୂର୍ବରେ ଆଲୋଚିତ ନିଷ୍କାମ କର୍ମ ପ୍ରତି ଆମେ ଦୃଷ୍ଟି ନ ଦେଇ ଧନାର୍ଜନ ପାଇଁ ବିଦ୍ୟା ଓ ବିଶେଷ କରି କର୍ମକୁ ନିୟୋଜିତ କରୁଛୁ । ଫଳଲାଭର ଆଶା ଆମ କର୍ମ ସମ୍ପାଦନରେ ବିଶେଷ ତାଡ଼ନା ସୃଷ୍ଟି କରୁଛି । ଗୀତାର ବାଣୀ ହେଉଛି, "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ" । ଏହା ସତ୍ତ୍ୱେ, ଆହୁରି ଭୀଷଣ କଥା ହେଉଛି ଯେ ଅତ୍ୟଧିକ ଧନ-ପ୍ରାପ୍ତିର ଆଶାରେ ଅସାଧୁ ଓ ଅବାଂଛିତ କର୍ମ ଓ ଏହାର ପନ୍ଥା ଆମେ ଅନୁସରଣ କରୁଛୁଁ ।

ଏହାର ଫଳ ସ୍ୱରୂପ ସମାଜ ଯେ କଳଙ୍କିତ ଓ ଅଧଃପତିତ ହେଉଛି ଏଥିପ୍ରତି ଆମେ ଭ୍ରୂକ୍ଷେପ କରୁନାହିଁ । 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ' କହି ଶ୍ରୀମହାପ୍ରଭୁ ଈଶ୍ୱର ମହତ୍ତ୍ୱ ଓ ସୁରକ୍ଷା ପାଇଁ ନିଜର ନରକବାସ କାମନା କରିଛନ୍ତି । ଏହିପରି ଅନେକ ତ୍ୟାଗୀ ମହାପୁରୁଷ ବିଶ୍ୱପାଇଁ ନିଜେ ନିଃସ୍ୱ ହୋଇଛନ୍ତି । କିନ୍ତୁ ଏବେ ଆମେ ଧନ ମଦରେ ଉନ୍ମତ୍ତ ହୋଇ ଜଗତ କଳଙ୍କିତ ହେଉ ପଛକେ ଆମ ଜୀବନ ଭୋଗବିଳାସରେ ଲୋଟିଯାଉର ସାଧନା କରୁଛୁଁ । ଧନଲାଭର ଆଶା ଦିଗ୍‌ବଳୟ ପରି ସୀମାହୀନ ହୋଇ ରହୁଛି । ଆମେ ବୁଝୁଛୁଁ ଓ ଆମର ବିଶ୍ୱାସ ହେଉଛି ଯେ ମାନ, ମହତ୍ତ୍ୱ, ପଦ, ପଦବୀ ଓ ପ୍ରତିଷ୍ଠା ପାଇଁ ଧନହିଁ ଏକମାତ୍ର ପ୍ରୟୋଜନ । ସବୁକିଛୁ କାବୁ ଓ କରାୟତ୍ତ କରି ହେବ ଧନ ବଳରେ । ତେଣୁ ଏଥିପାଇଁ ଆମର ଅସ୍ୱାଭାବିକ ତୃଷ୍ଣା । ଏହି ତୃଷ୍ଣାକୁ ମେଣ୍ଟାଇବା ପାଇଁ ପୂର୍ବକାଳର "ମୁଣ୍ଡଖାଲ ତୁଣ୍ଡରେ ମାରି" ଧନାର୍ଜନ କରିବାର ଉତ୍କୃଷ୍ଟ ପନ୍ଥା ଆଜି ନିକୃଷ୍ଟ ହୋଇଯାଇଛି । ଅସ୍ୱାଭାବିକ ତୃଷ୍ଣା ପରିପନ୍ଥୀ ମଧ୍ୟ ଅସ୍ୱାଭାବିକ ଓ ନିତ୍ୟନୂତନ ହେଉଅଛି । ଏଠାରେ ଗୋଟିଏ ନୀତିବାକ୍ୟ ସ୍ମରଣୀୟ—'ଯୌବନଂ ଧନସମ୍ପତ୍ତିଃ, ପ୍ରଭୁତ୍ୱମ୍ ଅବିବେକତା ! ଏକୈକମପ୍ୟନର୍ଥାୟ କିମୁ ଯତ୍ର ଚତୁଷ୍ଟୟମ୍ ।" ଅର୍ଥାତ୍ ଯୌବନ, ଧନ, ପ୍ରଭୁତ୍ୱ ଓ ଅବିବେକତା ଏହି ଚାରିଗୋଟି ମଧ୍ୟରୁ ଗୋଟିଏ ଗୋଟିଏ ମହା ଅନର୍ଥର କାରଣ । କିନ୍ତୁ ଚାରୋଟିଯାକ ଏକତ୍ର ହେଲେ ଅବସ୍ଥା କିପରି ଅସମ୍ଭାଳ ଏହା ସହଜରେ ଅନୁମେୟ । ଆଜିକାଲି କେବଳ ଧନ ହୋଇଗଲେ, ଯୌବନର ଉଚ୍ଛୃଙ୍ଖଳତା, କ୍ଷମତାର ସର୍ବଗ୍ରାସିତା ତଥା ବିବେକହୀନତାର ଅତ୍ୟାଚାର ସାଧନ କରାଯାଇ ପାରିବ ବୋଲି ଧରିନିଆଯାଉଛି । ସେଥିପାଇଁ "ପୁତ୍ରାଦପିଧନଭାଜାଂ ଭୀତିଃ" ଶଙ୍କରାଚାର୍ଯ୍ୟଙ୍କର ଏହି ଉକ୍ତି ଇତିହାସରେ ସତ୍ୟ ହୋଇ ରହିଛି । ଏଥିଯୋଗୁଁ ସେହି ମନୀଷୀ ମୋହ ଦୂର କରିବା ପାଇଁ ସତର୍କ କରି ଦେଇଛନ୍ତି—

"ମା କୁରୁ ଧନ ଜନ ଯୌବନ ଗର୍ବମ୍, ହରତି ନିମେଷାତ୍ କାଳଃ ସର୍ବମ୍"

ଏହି ପରିପ୍ରେକ୍ଷୀରେ ତାଙ୍କ ପରାମର୍ଶ ହେଉଛି—

"କସ୍ତ୍ୱଂ କୋଽହଂ କୁତ ଆୟାତଃ ତତ୍ତ୍ୱଂ ଚିନ୍ତୟ ତଦିଦଂ ଭ୍ରାତଃ ।

× × ×

ମାୟାମୟମିଦମ୍ ଅଖିଳଂ ହିତ୍ୱା ବ୍ରହ୍ମପଦଂ ପ୍ରବିଶାଶୁ ବିଦିତ୍ୱା ।"

ଏହି ପରାମର୍ଶ ଅନୁସାରେ ଆମ୍ଭେମାନେ 'ବ୍ରହ୍ମପଦ' ବିଷୟରେ ଚିନ୍ତା କରିବା ଉଚିତ । ଆମେ କାହାର ? ଆମେ କେଉଁଠାରୁ ଆସିଛୁଁ ? ଏହି ତତ୍ତ୍ୱ ଚିନ୍ତା କଲେ ସେହି ଆଦିସ୍ରଷ୍ଟା ଅନନ୍ତ, ଅବ୍ୟୟ, ଅକଳ୍ପିତ ଓ ଅନାମୟ ପରଂବ୍ରହ୍ମଙ୍କ ସମୀପରେ ଧ୍ୟାନ ଦେବାକୁ ପଡ଼ିବ ।

ଏହି କଥାର ମର୍ମଟିକୁ ଜନସାଧାରଣଙ୍କୁ ବୁଝାଇ ଦେବାକୁ ଯାଇ ଭାଗବତକାର ସରଳ ଭାଷାରେ ପ୍ରକାଶ କରିଛନ୍ତି—"ଧନ ଅର୍ଜିଲେ ଧର୍ମ କରି, ଧର୍ମେ ସ୍ଥାପିତ ନରହରି ।"

ଗୋଟିଏ ଉକ୍ତି ଅନୁସାରେ ପ୍ରକୃତ ଗାର୍ହସ୍ଥ୍ୟ ଜୀବନରେ ସାର୍ଥକତା ସାଧନ ପାଇଁ ବ୍ରହ୍ମସଚେତନତା ଏକାନ୍ତ ଆବଶ୍ୟକ । ବାହୁବଳ, ବୁଦ୍ଧିବଳ ଓ ଧନବଳ ପ୍ରକୃତ ବଳ ନୁହେଁ—ଆତ୍ମବଳ ହିଁ ସମସ୍ତ ବଳର ମୂଳ କାରଣ । ବାହୁ, ବୁଦ୍ଧି ଓ ଧନ ବଳରେ ଆମେ ଯେପରି ଲକ୍ଷ୍ୟହୀନ ହୋଇପଡ଼ୁ, ଜନବଳରେ ଆମ୍ଭେମାନେ ସେହିପରି ପଥଭ୍ରଷ୍ଟ ହୋଇଥାଉ । ପରିବାର-ଲୋକସଂଖ୍ୟାର ବୃଦ୍ଧିହେତୁ ଅନେକ ବ୍ୟକ୍ତି "ଅତି ଦର୍ପେ ହତା ଲଙ୍କା" ପରି ନିଜର ସର୍ବନାଶ କରିଛନ୍ତି । ଯୌଥ ପରିବାର ଦିନେ ଜନସଂଖ୍ୟାର ବଳରେ ବଳୀୟାନ୍ ହୋଇ ଅନେକ କ୍ଷୁଦ୍ର ପରିବାରଙ୍କୁ ଉତ୍ପୀଡ଼ିତ କରିଦେଇଛନ୍ତି । ଯେତେବେଳେ ଧନ ଜନ, ଗୋପଲକ୍ଷ୍ମୀ ପାଇଁ ପୂଜା ଆରାଧନାର ଆୟୋଜନ ଆଡ଼ମ୍ବରସହକାରେ କରାଯାଉଥିଲା । ଏହି ବର ଲାଭକରି ନିବେଦନ ମଧ୍ୟ କୃତକୃତ୍ୟ ହେଉଥିଲେ । କିନ୍ତୁ ନିଜର ଯଥେଚ୍ଛାଚାରିତା, ଅସଂଯତ ଆଚରଣ ଓ ସ୍ୱାର୍ଥାନ୍ଧତା ଯୋଗୁଁ ସେ ଏପରି ଭୟାବହ ସମସ୍ୟା ସୃଷ୍ଟି କରିଛି ଯେ ଆଜି ସେ ଆଉ ସେହି ଯାଚ୍ଞା କରୁନାହିଁ; କିନ୍ତୁ ରାଜନୀତି, ସମାଜର ପରିଚାଳନା ଓ ସାମାଜିକ ସ୍ୱୀକୃତିରେ ଜନବଳ ଏକ ନିର୍ଦ୍ଦିଷ୍ଟ ସାଧନ ହୋଇରହିଛି । ଜନସଂଖ୍ୟାକୁ କେନ୍ଦ୍ରକରି ବଳ କଷାକଷି ଚାଲିଛି । ଦିନେ ବାହୁବଳ ଯାହା କରୁଥିଲା, ଜନବଳ "ଜୋର ଯାର ମୂଲକ ତାର" ପରି ଆଜି କାର୍ଯ୍ୟ କରୁଛି । ଶହେଜଣ ଲୋକଙ୍କ ମଧ୍ୟରେ ଏକାବନ ଜଣ ଏକଜୁଟ ହୋଇଗଲେ ଅଣଚାଶ ଜଣଙ୍କୁ ନିଜ କ୍ଷମତା ବଳରେ ସଂପୂର୍ଣ୍ଣ ଶେଷ କରିଦେଉଛନ୍ତି । ଅଧୁନିକ ଗଣତନ୍ତ୍ରର ଏହା ଏକ ଅଭିଶାପ ଓ ଅପପ୍ରୟୋଗ ହୋଇଛି । ଗାନ୍ଧିଜୀଙ୍କ ରାମରାଜ୍ୟରେ ଜଣେହେଲେ ଲୋକର ଚକ୍ଷୁରୁ ଲୋତକ ବାହାରିବ ନାହିଁ ବୋଲି ଲକ୍ଷ୍ୟ ରଖାଯାଇଥିଲା । ସର୍ବାଧିକ ଲୋକଙ୍କର ସର୍ବାଧିକ ମଙ୍ଗଳ ପରିବର୍ତ୍ତେ ପ୍ରତ୍ୟେକ ଲୋକର ସର୍ବୋତ୍ତମ ମଙ୍ଗଳର ଚିନ୍ତା କରାଯାଉଥିଲା । ଯାହାହେଉ ଦୁରଭିସନ୍ଧି, କୁଚକ୍ର ଓ ଶୋଷଣ କଷଣର ଆୟୁଧରୂପେ ଧନ, ବାହୁ, ବୁଦ୍ଧି, ପରିଜନର ବୃଦ୍ଧିକୁ ବ୍ୟବହାର କରାଯାଇପାରୁଛି । ପକ୍ଷାନ୍ତରରେ ନୈତିକ ଓ ଆଧ୍ୟାତ୍ମିକ ଶକ୍ତିରେ ବଳୀୟାନ୍ ଲୋକ ଶତସିଂହ ବିକ୍ରମରେ କାର୍ଯ୍ୟ କରିପାରେ । ସତ୍ୟ, ଅହିଂସା ଓ ପ୍ରେମର ଅଭ୍ୟାସ କରି ଆତ୍ମଶକ୍ତିର ବିକାଶ କରିବାକୁ ହେବ । ଏହା ହିଁ ସମସ୍ତ ଶକ୍ତିର ଉତ୍ସ । ଏହା ଆମ ସ୍ୱାଧୀନତା ସଂଗ୍ରାମରେ ପ୍ରମାଣିତ ହୋଇଛି । "ସତ୍ୟମେବ ଜୟତେ", ଆଧ୍ୟାତ୍ମିକ ଶକ୍ତିର ବିଜୟ ଘଟିଛି ।

ସାଧାରଣରେ ଆମେ ଆମର ପରିଚୟ ଦେବାକୁ ଯାଇ ନିଜର ନାମ ପ୍ରକାଶ କରୁଁ । ନାମରେ ଆମେ ଚିହ୍ନିତ ହେଉ । ନାମ ସାଙ୍ଗକୁ ନାନା ଉପାଧି ଯୋଡ଼ିଦେଉଁ; କିନ୍ତୁ ଏହା ଆମ ଆତ୍ମା ନୁହେଁ । ସେହିପରି ଆମେ ଆମ ଦେହଦ୍ୱାରା ଚିହ୍ନାପଡ଼ୁଁ । ଅନ୍ୟମାନଙ୍କଠାରୁ ବାରି ହୋଇଯାଉ । ସେଥିପାଇଁ ଆମ ଦେହକୁ ଆମେ ସୁନ୍ଦର କରିବାକୁ ଯତ୍ନ କରୁ । ବଢ଼ିଆ ଲୁଗାପଟା ପିନ୍ଧୁ । ଏହା ମଧ୍ୟ ଆମ ଆତ୍ମା ନୁହେଁ । ଆମ ପିତାମାତାଙ୍କ ଯୋଗୁ ଆମେ ଗର୍ବକରୁ । ବସ୍ତୁତଃ ଏହା ଆମ ଆତ୍ମା ନୁହେଁ । ଆମେ ଯେଉଁ ପଦ-ପଦବୀ ଲାଭକରୁଁ, ତାହା ମଧ୍ୟ ଆମ ଆତ୍ମା ନୁହେଁ । ଏସବୁ କ୍ଷଣିକ ଓ ବିନାଶଶୀଳ । ଆତ୍ମା

ହେଉଛି ଅବିନାଶୀ । ଏହି ନଶ୍ୱର ଦେହରେ ଅନବଶ୍ୱର ଆତ୍ମାକୁ ଉପଲବ୍ଧି କରିବା ହେଉଛି ଆଧ୍ୟାତ୍ମିକ ଶିକ୍ଷାର ଉଦ୍ଦେଶ୍ୟ । ସେଥିପାଇଁ ମନୁଷ୍ୟକୁ କୁହାଯାଏ—"ଆତ୍ମନ୍" । "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ", ଏହା କହିଲେ ବିଶ୍ୱବ୍ରହ୍ମାଣ୍ଡର ମାନବକୁଳ ଏକ ହୋଇଯାଆନ୍ତି । ସେପରି ସ୍ଥଳରେ ଶତ୍ରୁତା ରହେ ନାହିଁ । ସମସ୍ତେ ଦେଶ, କାଳ, ରୂପ, ବର୍ଣ୍ଣ, ଧର୍ମ, ଭାଷା ଆଦି ଦୃଷ୍ଟିରୁ ବିଭିନ୍ନ ହେଲେହେଁ ଅଭିନ୍ନ । ବିଭେଦରେ ଅଭେଦହିଁ । ସମସ୍ତଙ୍କ ମଧ୍ୟରେ ଏକ ଆତ୍ମା ରହିଛନ୍ତି । "ତ୍ୱମେବ ମାତା ଚ ପିତା ତ୍ୱମେବ"—ତେଣୁ ଆମେ ସବୁ ସାରା ସଂସାରରେ ଭାଇଭଉଣୀ ।

ଦେହ ଅନିତ୍ୟ, ଭଙ୍ଗୁର ଓ ବିନାଶଶୀଳ । ମନୁଷ୍ୟର ଦୁର୍ଲଭ ତନୁ ଲାଭ କରି ଯଦି ଖାଇପିଇ, ବିଳାସବ୍ୟସନରେ କାଳକଟାଇ ନେଉଁ, ତେବେ ଏହି ଦେହର ଦୁର୍ଲଭତା ଆମେ ଅନୁଭବ କରୁନାହୁଁ । ପକ୍ଷାନ୍ତରରେ ଯଦି ଦେହ ମଧ୍ୟରେ ଥିବା ଅଦେହୀ ବା ଆତ୍ମାକୁ ଅନୁଭବ କରିବା ଓ ସେଥିପାଇଁ ବାଲ୍ୟକାଳରୁ ସାଧନା କରିଚାଲିବା ତେବେ ଆମ ଦୁର୍ଲଭ ଦେହର ସାର୍ଥକତା ସାଧିତ ହେବ ।

ଶରୀରର ଉପଯୁକ୍ତ ବିନିଯୋଗ କରିପାରିଲେ, ଆମେ ପ୍ରକୃତତଃ ସାର୍ଥକ ହୋଇ-ପାରିବା । ଶରୀରରୂପକ କ୍ଷେତ୍ରରୁ ସକଳ ବିକାର ଦୂରକରି ଆତ୍ମଚୈତନ୍ୟ ବିଷୟରେ ସଚେତନ ହେବା । ଭୋଗବିଳାସ, ବାସନାକାମନା ଓ ବିଷୟବାସନା ଆମକୁ ନରକଗାମୀ କରିବ । ସେଥିପାଇଁ କୁହାଯାଏ, "ତ୍ୟାଗ ହି ପୁରୁଷବ୍ୟାଘ୍ରଃ" । ତ୍ୟାଗୀ ପୁରୁଷ ବସ୍ତୁତଃ ଶ୍ରେଷ୍ଠ । ଏଥିପାଇଁ ଆମକୁ ନିମ୍ନପ୍ରକାର ସାଧନା କରିବାକୁ ହେବ । ଏହାର ସୂଚନା ସ୍ୱରୂପ କେତୋଟି ଉଦାହରଣ ଦିଆଯାଉଛି :

(୧) ବିଶ୍ୱସ୍ରଷ୍ଟାଙ୍କଠାରେ ବିଶ୍ୱାସ ରଖିବାକୁ ହେବ । ସେ ବିଶ୍ୱାସ କେବେହେଁ ଟଳିବ ନାହିଁ । ଆମ ପରିବାରରେ ଆମ ପିତା ଅଛନ୍ତି । ସେହିପରି ବିଶ୍ୱସୃଷ୍ଟିରେ ବିଶ୍ୱପିତା ଅଛନ୍ତି । ସେ ସର୍ବାଶ୍ରୟ, ଜଗତ୍‌କର୍ତ୍ତା ଓ ସର୍ବନିୟନ୍ତା । ସେ ସର୍ବବ୍ୟାପୀ ।

କେବଳ ଶୂନ୍ୟଗୁଡ଼ିଏ ଲେଖିଲେ ଏହା ଅର୍ଥହୀନ ହୁଏ । ଏହାର ସଂଖ୍ୟା ଯେତେ ବେଶୀ ହେଉ ପଛକେ ଏହାର ମୂଲ୍ୟ ନାହିଁ ବା ନଗଣ୍ୟ । ଶୂନ୍ୟର ବାମକୁ ଗୋଟିଏ ଅଙ୍କ ଲେଖିଲେ ଏହା ଏକ ନିର୍ଦ୍ଦିଷ୍ଟ ସଂଖ୍ୟା ହୁଏ । ଏହାର ମୂଲ୍ୟ ରହେ । ସୃଷ୍ଟି ସର୍ବଦା ସ୍ରଷ୍ଟା ସମ୍ପର୍କୀକୃତ । ସ୍ରଷ୍ଟା ବିଚ୍ଛିନ୍ନ ସୃଷ୍ଟିର କଳ୍ପନା ଅସାର, ଅର୍ଥହୀନ ଓ ଅଳୀକ ।

ବିଶ୍ୱପିତାଙ୍କ ସମ୍ପର୍କରେ ଆସି ବିଶ୍ୱସୃଷ୍ଟି ସାର୍ଥକ ହୁଏ । ପରମାତ୍ମାଙ୍କ ଦ୍ୱାରା ଆମେ ସୃଷ୍ଟି, ଏହି ଭାବନା ଓ ଚେତନା ଦ୍ୱାରା ଆମ୍ଭେମାନେ ବିଭିନ୍ନ ହେଲେହେଁ ଆମ ମଧ୍ୟରେ ଭ୍ରାତୃଭାବ ଆସେ । କାହାକୁ ପୃଥକ୍ ଭାବରେ ଦେଖିହୁଏ ନାହିଁ । ସମଗ୍ର ସଂସାରହିଁ ଆମର କୁଟୁମ୍ବ । ତେଣୁ ସର୍ବଜୀବ ପ୍ରତି ଆମର ସମ୍ମାନ ଓ ସଦିଚ୍ଛା ରହିବ ।

(୨) ଆମ୍ଭେମାନେ ଯମ ଓ ନିୟମ ପାଳନ କରିବା ଉଚିତ । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ହେଉଛି ଯମ । ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର-

ପ୍ରଣିଧାନ ହେଉଛି ନିୟମ । ଏହାଦ୍ୱାରା ଆତ୍ମାର ବିକାଶ ହେବା ସଙ୍ଗେ ସଙ୍ଗେ ଧର୍ମଲାଭ ହେବ । ଶରୀର, ମନ ଓ ହୃଦୟକୁ ନିର୍ମଳ ରଖିବାକୁ ହେବ ।

(୩) ପ୍ରାତଃ ଓ ସାୟଂ ବ୍ରାହ୍ମମୁହୂର୍ତ୍ତରେ ପରମେଶ୍ୱରଙ୍କ ଉପାସନା କରିବା ଉଚିତ । ସେହି ଶୁଦ୍ଧ ଚୈତନ୍ୟଙ୍କୁ ସ୍ମରଣ କରିବାକୁ ପଡ଼ିବ ।

(୪) ବେଦ, ବେଦାନ୍ତ, ଗୀତା, ବାଇବେଲ୍, କୋରାନ୍ ଆଦି ଧର୍ମଶାସ୍ତ୍ର ପ୍ରତିଦିନ କିଛି ସମୟ ପାଇଁ ଅଧ୍ୟୟନ କରିବା ଉଚିତ । ଏହାହିଁ ସ୍ୱାଧ୍ୟାୟ, ଯଦ୍ଦ୍ୱାରା ଆମେ ଆତ୍ମଚିନ୍ତା କରିପାରିବା ।

(୫) ଇନ୍ଦ୍ରିୟସଂଯମ ନିୟମିତ ପାଳନ କରିବା ଉଚିତ । ସୁଖ ଭୋଗରେ ଆସକ୍ତ ରହିଲେ ଇନ୍ଦ୍ରିୟ ଲାଳସା ବଢ଼ିବ । ଅଧିକରୁ ଅଧିକ ଇନ୍ଦ୍ରିୟପରାୟଣ ହେବାକୁ ପଡ଼ିବ । ଏହା ଫଳରେ ସତ୍‌ଜ୍ଞାନ ଓ ସତ୍‌ଚିନ୍ତା ଆମର ରହିବ ନାହିଁ । ତେଣୁ ଇନ୍ଦ୍ରିୟଗଣଙ୍କୁ ବିଭୁଙ୍କର ସେବାରେ ଲଗାଇବାକୁ ହେବ । ଦେହ ତ ବିନାଶଶୀଳ—ଏହାର ସେବାରେ ଏତେ ଯତ୍ନ କିଆଁ ?

(୬) ବ୍ରହ୍ମଚର୍ଯ୍ୟ ନିଷ୍ଠାରେ ପାଳନ କରାଯିବ । ଏଥିପାଇଁ ଅନୁକୂଳ ସାତ୍ତ୍ୱିକ ପାନାହାର କରାଯିବ । ସର୍ବଭୂତହିତେରତ ହେବାର ଅଭ୍ୟାସ କରିବାକୁ ହେବ । କାହାରି ପ୍ରତି ରାଗ ଓ ଦ୍ୱେଷ ନରହି ସମସ୍ତଙ୍କର ମଙ୍ଗଳ କାମନା ଓ ଆଚରଣ କରିବା ଉଚିତ । ଏପରିକି ଆମର କେହି ଶତ୍ରୁତା ଆଚରଣ କରୁଛନ୍ତି ବୋଲି ଆମେ ଭାବିଲେହେଁ ଆମେ ତାଙ୍କର ଅନିଷ୍ଟ ଚିନ୍ତା କରିବା ନାହିଁ । ଆମେ ପରମାତ୍ମାଙ୍କ ସନ୍ତାନ ହୋଇଥିବାରୁ ସମସ୍ତେ ଆମର ଆତ୍ମୀୟ । ସେହି ଶୁଦ୍ଧ ଚୈତନ୍ୟ ସମସ୍ତଙ୍କ ହୃଦୟରେ ରହିଛନ୍ତି । ସମସ୍ତ ବିଶ୍ୱକୁ ସେ ଦୃଷ୍ଟିରୁ ଆମର କୁଟୁମ୍ବ ବୋଲି ଭାବିବା ଉଚିତ । ବିଶ୍ୱର ବିବାଦ ଓ ଦୁଃଖ ଦୂରକରି ଏକ ସମୃଦ୍ଧ ଓ ସୁଖୀ ବିଶ୍ୱ ପାଇଁ ପ୍ରାର୍ଥନା କରିବା ଉଚିତ । ମହିମାଧର୍ମର ସନ୍ଥକବି ଭୀମ ଭୋଇ ପ୍ରଭୁଙ୍କ ଅପାର କରୁଣା ଧ୍ୟାନକରି ପ୍ରାର୍ଥନା କରିଛନ୍ତି—

"ମୋର ପିଣ୍ଡ ପ୍ରାଣ ଦେଇଅଛି ଦାନ ଅଲେଖ ପୁରୁଷ ପାଦେ ।<br>
ଶ୍ରୀଗୁରୁମୁରେ ମୁହିଁ ବ୍ରହ୍ମାଣ୍ଡର ପାଇଁ ଜଣାଣ କରୁଛି ଏବେ ।।<br>
ଅଶେଷ ବ୍ରହ୍ମାଣ୍ଡ ବୁଡ଼ି ଯେବେ ଯିବ କାହିଁରେ ରହିବି ମୁହିଁ ।<br>
ମନ ଛନ୍ନ ଛନ୍ନ ହେଉଛି ଉଚ୍ଛନ୍ନ ଏପିଣ୍ଡ ବ୍ରହ୍ମାଣ୍ଡ ପାଇଁ ।।<br>
ଗୁରୁଙ୍କର ପିଣ୍ଡ ଗୁରୁଙ୍କ ବ୍ରହ୍ମାଣ୍ଡ ଗୁରୁଙ୍କର ଧନପୂର ।<br>
ସପତ ବ୍ରହ୍ମାଣ୍ଡ ଚଉଦଭୁବନ ଗୁରୁଦେବ ରକ୍ଷା କର ।।<br>
ଏକୋଇଶପୁର ଚଉଦ ଭୁବନ ଯେତିକି ଠାରେ ଯେତିଛନ୍ତି ।<br>
ସବୁ ଘଟେ ପ୍ରଭୁ ହେତୁ ଚେତା ଦିଅ ଉଠୁ ଅଲେଖ ଭଗତି ।।<br>
ଉଡ଼ାଖାନି, ବୁଡ଼ାଖାନି, ଚଳଖାନି ଅଚଳ ଖାନିଏ ଯେତେ ।<br>
ଜଣେ ଜଣେ କରି ଉଠାଣ ଏହାକୁ ଚେତା ଦିଅନ୍ତୁ ସମସ୍ତେ ।।

ଏଜନ ଜଗତ ହତ ହୋଇଗଲେ କାହିଁ ପ୍ରଚରିବ ମୁହିଁ ।
ଏଣୁ କରି ସିନା ପ୍ରଭୁ ଶ୍ରୀଗୁରୁଙ୍କୁ ନାଥ ଜଣାଣ କରଇ ।। (ସ୍ତୁ ୩୪' ୫-୧୦)

ଏହି ବ୍ରହ୍ମାଣ୍ଡ ଭାବନା ଭାରତୀୟ ସଂସ୍କୃତିର ଆଧାର । "ବସୁଧୈବ କୁଟୁମ୍ବକମ୍" ହେଉଛି ସେହି ବିଶ୍ୱଭାବନାର ଅନ୍ୟ ଏକ ଦିଗ । ସବୁରିପ୍ରତି ହିଂସା, ଦ୍ୱେଷ ଓ ଘୃଣା ପରିତ୍ୟାଗ କରିବାକୁ ହେବ । ଏହି ପ୍ରସଙ୍ଗରେ ମହାତ୍ମାଗାନ୍ଧି କହନ୍ତି ଯେ ପାପକୁ ଘୃଣା କରିବା ସଙ୍ଗେ ସଙ୍ଗେ ପାପୀଙ୍କୁ ସ୍ନେହ କରିବାକୁ ହେବ, ଆପଣାର କରାଯିବ । ତାହା ହେଲେ ବିଶ୍ୱ ପାପମୁକ୍ତ ହେବ ଓ ପ୍ରତ୍ୟେକ ବ୍ୟକ୍ତି ଦିବ୍ୟ ଦୃଷ୍ଟିର ଅଧିକାରୀ ହେବେ ।

(୭) "ଶରୀରମ୍ ଆଦ୍ୟଂ ଖଲୁ ଧର୍ମ ସାଧନମ୍" । ଭଲକଥା, ଶରୀର ହେଉଛି ଏକ ସାଧନ, ପରୋପକାରିତା ଓ ନିଃସ୍ୱାର୍ଥ ସେବା ପାଇଁ କଦାପି କୌଣସି କାଳରେ ଯେ କୌଣସି କାରଣରୁ ପରପୀଡ଼ନ ପାଇଁ ନୁହେଁ; ମନ, ବଚନ ଓ ଆଚରଣରେ ପୀଡ଼ା ହୋଇପାରେ । ବରଂ ଶରୀର ହେଉଛି ସେବାର ସାଧନ କ୍ଷେତ୍ର । ଏହା ଫଳରେ ସମାଜ ଓ ସମସ୍ତଙ୍କର ମଙ୍ଗଳ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତି ମଧ୍ୟ ମଙ୍ଗଳମୟ, ମହାନ୍ ଓ ମହିମାନ୍ୱିତ ହୋଇପାରିବ ।

(୮) ମନର ଅହଂକାର ଓ ଦେହର ଅଭିମାନ ସର୍ବଥା ବର୍ଜନୀୟ । "ବିନୟ ମଧୁର ବଚନ, କହି ତୋଷିବ ଜନମନ", ଏହା ଭଗବତର ବାଣୀ ଓ ଆମର ଧ୍ୟେୟ । ନିଷ୍ଠାରେ ନିଷ୍କାମ କର୍ମ କରାଯିବ । "କାର୍ଯ୍ୟଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ ।" କର୍ମରେ ଲଗି ସୁଦ୍ଧା ଅଲଗା ରହିବାକୁ ହେବ । ଜ୍ଞାନ ଓ ଧନ ଅର୍ଜନରେ ନିଜକୁ ଜଣେ ବିନୀତ କର୍ମୀ ଭାବରେ ଗ୍ରହଣ କରିବାକୁ ହେବ ।

ଏହାହିଁ ଅଧ୍ୟାତ୍ମବିଦ୍ୟା । ଆମର ପାଠ୍ୟ ବିଷୟକୁ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଏହି ବିଦ୍ୟାର ଅଧ୍ୟୟନ ଓ ଅଭ୍ୟାସ କରିବାକୁ ପଡ଼ିବ । କୁହାଯାଏ ଯେ ଏହି ବିଦ୍ୟା ଅପେକ୍ଷା ଅନ୍ୟ କୌଣସି ଉତ୍କୃଷ୍ଟ ବିଦ୍ୟା ନାହିଁ ଏବଂ ଏହି ବିଦ୍ୟାକୁ ଆୟତ୍ତ କରିପାରିଲେ ଅନ୍ୟ ସବୁ ବିଦ୍ୟା ଆମର ଆୟତ୍ତ ହୋଇପାରିବ ।

ଆମ ପାଇଁ ତଥା ବିଶ୍ୱପାଇଁ ଆମେ ଚାହୁଁ ସୁଖ, ଶାନ୍ତି, ମୈତ୍ରୀ, ପ୍ରୀତି ଓ ପ୍ରଗତି । ଏହି ବିଚାରରୁ ଆମେ ବ୍ରହ୍ମଜ୍ଞାନ ଅଧ୍ୟୟନ କରିବା । ଆମେ ଏ ବିଷୟରେ ଶିକ୍ଷା ଗ୍ରହଣ କରିବା । "ସର୍ବଜନ ହିତାୟ" ଓ "ସର୍ବଜନ ସୁଖାୟ" ଭାବନାରେ ଆମେ ଏହି ଅଧ୍ୟାତ୍ମ ବିଜ୍ଞାନ ଅଧ୍ୟୟନ କରିବା ।

---

# ସଂହତିର ଶପଥ

ମିଳିମିଶି ଚାଲିବାର ଶପଥ । ପାଦ ଓ ପାଣି ସମତାଳରେ ପଡ଼ିବ । ବୁଦ୍ଧି, ମନ ଓ ଚିତ୍ତରେ ଗୋଟିଏ ଚେତନା, ଚିନ୍ତା ଓ ଚୈତନ୍ୟ । ବିଭିନ୍ନ ଆକାର ଓ ପ୍ରକାର ମଧ୍ୟରେ ଏକ ଏକାକାରର ପ୍ରେରଣା ବିରାଜିବ । କିଏ କେଉଁଠି ହେଲେହେଁ ଆମେ ବିଖଣ୍ଡିତ ନ ହୋଇ ଅବିଭକ୍ତ ହୋଇ ରହିବା । ଫୁଲଗୁଡ଼ିକର ରଙ୍ଗ, ଗଠନ ଓ ମହକ ଠିକ୍ ଏକ ନୁହେଁ । ଏସବୁ କେହି କାହା ସଙ୍ଗେ ସମାନ ନୁହନ୍ତି । ମାଳାକାରର କଳା ଏ ସବୁର ସମାବେଶ କରିଥାଏ । ଲୁଚିରହିଥାଏ ସୂତାଖିଅଟିଏ ସବୁରି ଅନ୍ତରରେ । ପ୍ରଚ୍ଛନ୍ନ ଆତ୍ମା ସ୍ୱରୂପରେ । ସେଠୁ ଜନ୍ମ ଲାଭ କରେ ମାଳାକାରର ମାଳା; ଶୋଭା, ସୌନ୍ଦର୍ଯ୍ୟ ଓ ସୌଷ୍ଠବର ଭଣ୍ଡାର । ସମସ୍ତଙ୍କ ମନଲୋଭା ଓ ଚିତ୍ତବିମୋହନକାରୀ ସେ ପୁଷ୍ପର ମାଳା— ଦେବ ଦାନବ ଓ ମାନବର ଚିତ୍ତଚୋର । କିନ୍ତୁ ଜାତି, ବର୍ଣ୍ଣ ଓ ସୁବାସରେ ଯେତେ ଉଚ୍ଚ ଶ୍ରେଣୀର ପୁଷ୍ପଟିଏ ହେଲେ ହେଁ ଓ ଏହାର ସଂଖ୍ୟାଧିକ୍ୟ ଯେତେ ବେଶି ହେଉ ପଛକେ ମାଳାକାରର କଳା ତଥା ପ୍ରଚ୍ଛନ୍ନ ସୂତ୍ର ବିନା ସେପରି ଶୋଭା ପ୍ରକାଶ ପାଇବ ନାହିଁ । ସେପରି ପୁଲକ ଓ ପବିତ୍ରତା ମନରେ ଉକୁଟିବ ନାହିଁ । ତେଣୁ ପୁଷ୍ପଗୁଡ଼ିକର ବିଭିନ୍ନତା ମାଳାକାରର କଳାରେ ରଞ୍ଜିତ ହୋଇ ଅପୂର୍ବ ଶକ୍ତି, ଶୋଭା ଓ ସାମର୍ଥ୍ୟ ସୃଷ୍ଟି କରିଛି । ଏହାହିଁ ଆମ ସଂହତି ସହିତ ତୁଳନୀୟ । ସେହି ସଂହତିର ସୁରକ୍ଷା ଓ ସମୃଦ୍ଧି ପାଇଁ ଶପଥ । ଏହା ସମସ୍ତଙ୍କୁ ସମାନ କରେ ନାହିଁ କିମ୍ବା ସମସ୍ତଙ୍କର ସଂଖ୍ୟା କମେ ଊଣା କରି ଶେଷରେ ମାତ୍ର ଗୋଟିଏ କରେ ନାହିଁ । ଆମେ ସଂଖ୍ୟାରେ ଅନେକ । ଆମ ବେଶ, ଭୂଷା, ଭାଷା ଓ ଭାବ ମଧ୍ୟ ଅନେକ । କିନ୍ତୁ ଆମେ ଗୋଟିଏ ଭାବକେନ୍ଦ୍ରରେ ଗୁନ୍ଥା ହୋଇ ସୃଷ୍ଟି କରିଛୁ ଐକ୍ୟ ଓ ଏକାତ୍ମତା । ସମଷ୍ଟି ଓ ବ୍ୟଷ୍ଟି ପାଇଁ ଏଥିରେ ରହିଛି ଶକ୍ତି ଓ ସାମର୍ଥ୍ୟ । ଏଥିରେ କେହି ନଗଣ୍ୟ, ଅଗଣ୍ୟ ଓ ଅବହେଳିତ ନହୋଇ ପ୍ରତ୍ୟେକଙ୍କ ପାଇଁ ମିଳିଛି ପୂର୍ଣ୍ଣ ପରିପ୍ରକାଶର ସୁଯୋଗ ଓ ଏହା ସଙ୍ଗେ ସଙ୍ଗେ ଗଢ଼ିଉଠିଛି ଦୃଢ଼ତା ଓ ଅବିଭକ୍ତତା । ଏହା ହିଁ ବିଭେଦ ମଧ୍ୟରେ ଅଭେଦତା । ଏଥିପାଇଁ ପ୍ରାଣପାତର ପ୍ରତିଜ୍ଞା ।

କାରଣ ଆମେ ବିବେକୀ ମାନବ । ଜ୍ଞାନ ଓ ବିଜ୍ଞାନ ଦ୍ୱାରା ଆମେ ଆଲୋକିତ । ଆମ ଅନ୍ତରର ଉତ୍ସରୁ ଆମେ ଅବହିତ ହୋଇପାରିଛୁ । ଝିପାବତୀର (ଟର୍ଚ୍ଚ) ଆଲୋକକୁ ଆମେ ଭିତରେ ଓ ବାହାରେ ପକାଇ ପାରିବା । ବିଜ୍ଞାନ ଦ୍ୱାରା ଆମେ ଆମ ପରିବେଶକୁ ଜାଣି ପାରୁଛୁ ଓ ନିଜ ଆୟତ୍ତରେ ରଖିପାରୁଛୁ । ଏହାଛଡ଼ା ଆମ ଆତ୍ମଜ୍ଞାନ ବଳରେ ଆମେ ଇନ୍ଦ୍ରିୟ ସକଳକୁ ବଶୀଭୂତ କରି ଆତ୍ମବୋଧ ଓ ଆତ୍ମଶକ୍ତି ଲାଭ କରିପାରିଛୁ । ଏହି ସୁଯୋଗ

ଲଭ କରି ଆମେ ବଳୀୟାନ୍ । ବିଚ୍ଛିନ୍ନତା ଆମକୁ କେବେହେଁ ବିଚ୍ଛିନ୍ନ କରିପାରିବ ନାହିଁ । ବିଶେଷକରି ବିଜ୍ଞାନ ପଦ୍ଧତି ଓ ଆତ୍ମଜ୍ଞାନର ସମନ୍ୱୟ ଦ୍ୱାରା ଆମ ହୃଦୟରେ "ଜାତୀୟ ମମତା ଓ ବିଶ୍ୱଜନପ୍ରୀତି" ଦୃଢ଼ୀଭୂତ ହୋଇପାରିବ । ପ୍ରାତଃକାଳର ସୂର୍ଯ୍ୟକିରଣ ଦ୍ୱାରା ଯେପରି ଅନ୍ଧକାର ଅପସରିଯାଏ, ସେପରି ବିଜ୍ଞାନ ଓ ଆତ୍ମଜ୍ଞାନର ସମନ୍ୱିତ ବିକାଶ ଯୋଗୁଁ ଅହମିକା ଓ ଅଭିମାନ ଦୂରୀଭୂତ ହୋଇଯିବ । ଏହା ଫଳରେ ରାଷ୍ଟ୍ର ସୁନ୍ଦର, ସୁନିର୍ମଳ ଓ ସୁବିସ୍ତୃତ ହେବ । ବସ୍ତୁତଃ ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ ସମ୍ପ୍ରସାରଣ ହିଁ ଜୀବନ ଓ ସଙ୍କୋଚନ ହିଁ ମୃତ୍ୟୁ । ଆତ୍ମଜ୍ଞାନ ହେଉଛି ସମ୍ପ୍ରସାରିତ ଜୀବନର ଭିତ୍ତି । ଯେଉଁଠି ସେହି ବ୍ରହ୍ମ ଦର୍ଶନ ସେଇଠାରେ "ଯଃ ମାଂ ପଶ୍ୟତି ସର୍ବତ୍ର, ସର୍ବଂ ଚ ମୟି ପଶ୍ୟତି" (ଗୀତା) । ଏହାହିଁ ପ୍ରତିଧ୍ୱନିତ ହୁଏ ସନ୍ଥକବି ଭୀମଭୋଇଙ୍କ ଭଜନରେ—

"ଅନନ୍ତ ନାମ ଜୁହେଁ ବର
ଅଲେଖ ବ୍ରହ୍ମ ଠାକୁର ରୂପରେଖ ନାହିଁ ତାର
ଆତ୍ମାସ୍ୱରୂପେ ବେହାର, ସର୍ବଭୂତେ ପୂର ।"

ରାମକୃଷ୍ଣ ପରମହଂସ ମଧ୍ୟ ଜୀବକୁ ଶିବ ରୂପେ ଦେଖିଥିଲେ । ଏହି ଦୃଷ୍ଟି ଦ୍ୱାରା ପ୍ରାଣୀମାନଙ୍କ ମଧ୍ୟରେ ପ୍ରାଚୀର ରହେ ନାହିଁ । ମନରେ ଆସେ ବିସ୍ତୃତ ଓ ବିଶ୍ୱାତୀତ ଚେତନା । "ବସୁଧୈବ କୁଟୁମ୍ବକମ୍" ବାସ୍ତବ ହୁଏ । ସଙ୍କୀର୍ଣ୍ଣତା ରହେ ନାହିଁ ।

ଏହି "ନାରାୟଣ" ଚେତନାରୁ ନିମ୍ନକୁ ଖସି ଆସି ନର ଯଦି ନାରକୀୟ ଗର୍ତ୍ତରେ ପଡ଼ିଯାଏ, ତେବେ ସେ ପାଶବିକ ପ୍ରବୃତ୍ତିଦ୍ୱାରା ପରିଚାଳିତ ହୋଇ ପଶୁଭାବାପନ୍ନ ହୋଇଯାଏ । ସେ ଦାନବ ହୁଏ । ସେ ନିଜେ ଓ ନିଜ ଭୋଗ ହିଁ ତା ପାଇଁ ମୁଖ୍ୟ ହୁଏ । ପ୍ରବୃତ୍ତି, ପ୍ରତିଷ୍ଠା ଓ ପରିଚୟର ବନ୍ଧିରାବରଣରେ ସେ ବାନ୍ଧି ହୁଏ । ନାମ ଓ ରୂପ ତା ପାଇଁ ମୋହ ସୃଷ୍ଟି କରେ । ଅଜ୍ଞାନ-ଅନ୍ଧକାରରେ ସେ ନିଜକୁ ଚିହ୍ନିପାରେ ନାହିଁ । ଏଥିଯୋଗୁଁ ସେ କୂପ-ମଣ୍ଡୂକ ହୋଇଯାଏ । ନିଜର ସ୍ୱାର୍ଥ ତା'ର ସକଳ ପ୍ରଚେଷ୍ଟାର ମୂଳ କାରଣ ହୁଏ । ଏଥିପାଇଁ ତା'ର ସମସ୍ତ ସାଧନା, ତପ, ଜପ, ବ୍ରତାଦି ନିୟୋଜିତ କରାଯାଏ । ସଙ୍କୀର୍ଣ୍ଣ ସ୍ୱାର୍ଥ ସିଦ୍ଧି ପାଇଁ ସେ ସମସ୍ତ ଶପଥ କରିଥାଏ—ଏପରିକି ପତିପତ୍ନୀ, ପିତାପୁତ୍ର, ଜନକ ଜନନୀ ଓ ପୁତ୍ରକନ୍ୟା; ଏପରି ନିକଟ ସମ୍ପର୍କ ମଧ୍ୟରେ ନିଜେ ହିଁ ବଞ୍ଚିବାର ସଙ୍କଳ୍ପକୁ ପ୍ରଥମେ ସ୍ୱୀକାର କରେ । ଗୁଆ ଟେକାଯାଏ । କଳସ ବସେ । ପୁରାଣର ପାରାୟଣ ଚାଲେ । ଦେବାଧିବାସ କରାଯାଏ । ଏପରି ସବୁ କ୍ରିୟା-କର୍ମ ଆଡ଼ମ୍ବରରେ ପରିଣତ ହୁଏ । ଲୋକଦେଖାଣିଆକୁ ବାହାରର ଗ୍ଲୁକଚକ୍ୟ । ସବୁ କିଛି ମେଣ୍ଢା ଚର୍ମ ପରିହିତ ସିଂହର ଦୃଶ୍ୟ । ପୁରାପୁରି ଛଦ୍ମ-ବେଶର ପ୍ରତାରଣା । ଏହି ଦୃଷ୍ଟିରୁ ବୁଝାଯାଏ—ମା-ଝିଅ ଏକ ସଙ୍ଗେ ଦେଉଳକୁ ଯାଆନ୍ତି ଓ ଯେଝା ସୁଖ ମନାସନ୍ତି—ଚରମ ସ୍ୱାର୍ଥସିଦ୍ଧିର ଦୃଷ୍ଟାନ୍ତ । ଏହା ଫଳରେ ସହରତ ଆସିବ କେଉଁଠୁ ? ମାତା ଓ କନ୍ୟା ବି ପୃଥକ୍ ହୋଇଯାଆନ୍ତି । ସମସ୍ତ ଦେଶବାସୀଙ୍କୁ ଆମେ ଆପଣାର କରିବା କପରି ? ବିଶ୍ୱବନ୍ଧୁତ୍ୱ ହୋଇପାରିବ କି ? ବିଶ୍ୱକୁଟୁମ୍ବ ଅସମ୍ଭବ ହେବ ।

ଏପରି ଶତଧା ବା ସହସ୍ରଧା ବିଭକ୍ତ ହୋଇଯିବାରୁ ମାନବପରିଶିଅର ସୂତ୍ର ଆମକୁ ଅବିଭକ୍ତ କରିପାରିବ ନାହିଁ ।

ମୋଗଲ ସମ୍ରାଟ ବାବରଙ୍କ କାହାଣୀ ଇତିହାସର ପାଠ୍ୟ । ପୁତ୍ର ହୁମାୟୁନ ରୋଗାକ୍ରାନ୍ତ । ମୃତ୍ୟୁ ଆସନ୍ନ । ସେ ବଞ୍ଚିବେ କିପରି ? ଚିକିତ୍ସାର ସମସ୍ତ ପନ୍ଥ ବିଫଳ ହୋଇଛି । ସମ୍ରାଟଙ୍କୁ ଏ ସବୁର ଅଭାବ ନାହିଁ । ଶେଷରେ ନିଜର ସବ ପ୍ରିୟଙ୍କୁ ସମର୍ପଣ କରି ଏହାର ବିନିମୟରେ ପୁତ୍ରର ପ୍ରାଣ ପାଇବାର ଆଶା ବାବର ଦେଖନ୍ତି । ଯାହା କିଛି ପ୍ରିୟତମ ସେ ତ ଅର୍ପଣ କରିସାରିଛନ୍ତି । ଧନ ଦୌଲତ କିଛି ନୁହେଁ । ପ୍ରାସାଦ ଓ ପ୍ରତିଷ୍ଠା ମଧ୍ୟ ଅତି ନଗଣ୍ୟ । ବାକି ରହିଛି ସମ୍ରାଟଙ୍କର ସ୍ୱକୀୟ ଜୀବନ । ସମ୍ରାଟ ନିଜ ଜୀବନ ଦାନ କରିବାକୁ ପ୍ରସ୍ତୁତ, କାରଣ ଆତ୍ମଜନଙ୍କ ଅପେକ୍ଷା ଅଧିକ ଆତ୍ମୀୟ ପିତାଙ୍କ ପକ୍ଷରେ କଅଣ ହୋଇପାରେ ? "ମୁଁ" ଓ "ମୋର" ସମ୍ପ୍ରସାରଣ ସେଥିରେ ରହିଛି । ସେ ତାହାହିଁ କରିଛନ୍ତି ଓ ନିଜର ପ୍ରାଣ ବିନିମୟରେ ସେ ପ୍ରିୟତମ ପୁତ୍ର ଭାବରେ ନିଜକୁ ଲାଭ କରିଛନ୍ତି । ଗଳ୍ପ ପ୍ରସଙ୍ଗରେ କୁହାଯାଏ ଯେ ଜଣେ ଧନାଢ୍ୟ ବ୍ୟକ୍ତିଙ୍କର ଅନ୍ତିମ ଇଚ୍ଛା କଅଣ ହୋଇପାରେ ? ଧନ ଓ ଜନର ଅଭାବ ତାଙ୍କର ନାହିଁ । ସେ ନିଜ ହାତରେ ସବୁ କମାଇଛନ୍ତି । ଭୋଗ ବିଳାସରେ ସେ ବିଭୋର । ତାଙ୍କ ଅନ୍ତେ ଅନ୍ତତଃ ପାଞ୍ଚ ପୁରୁଷ ସେହି ଭୋଗରେ ଭାଗୀ ହୋଇ ପାରିବେ । ତଥାପି ତୃଷ୍ଣା ତାଙ୍କୁ ପରିହାର କରି ନାହିଁ । ସେ ମହେଶଙ୍କ ମନ୍ଦିରରେ ଅଧିା ପଡ଼ିଛନ୍ତି । ଏକୋଇଶ ଦିନର ବ୍ରତ କରିଛନ୍ତି । ମହାସଙ୍କଳ୍ପ ସେ ଗ୍ରହଣ କରିଛନ୍ତି । ପନ୍ଦର ଦିନ ନ ପୂରୁଣୁ ଦେବ ଦେବ ମହାଦେବ ସ୍ୱୟଂ ସ୍ୱପ୍ନରେ ଉପଗତ । "କି ଅଭାବ ରହିଛି ବତ୍ସ ! ଧନ-ଜନ-ଗୋପ-ଲକ୍ଷ୍ମୀ ତ ଭରପୂର । କୁହ ବତ୍ସ ! କେଉଁଥିପାଇଁ ଏ କଷଣ ଓ କ୍ଳେଶ ? ପ୍ରକାଶ ମାତ୍ରେ ହିଁ ସବୁକିଛି ପରିପୂର୍ତ୍ତି ହେବ । ତଥାଃ ପୂର୍ତ୍ତି ହୋଇଛି । ଏଥିରେ ସେହି ଧନାଢ୍ୟ ବ୍ୟକ୍ତି କାମନାପୂର୍ତ୍ତି ଆଶାରେ ମନ ଖୋଲି ଦେଇଛନ୍ତି—"ପ୍ରଭୋ, ଆପଣ ଅନ୍ତର ଜାଣନ୍ତି—ଆଉ କହିବା କି ପ୍ରୟୋଜନ ? ତଥାପି ଆପଣଙ୍କ ଆଜ୍ଞାରେ ସବୁ ବିତ୍ତ ଓ ବିଭବ । ପୁତ୍ର ପୌତ୍ର ମଧ୍ୟ ସବୁ ଆପଣଙ୍କର ଦାନ । କେବଳ ଗୋଟିଏ ମାଗୁଣି—ଏହି ପ୍ରାସାଦ, ପଲଙ୍କ ମୋ ପାଇଁ ମିଳୁ । ମୁଁ ମୋର ଅଣନାତି ଭାବରେ ଜନ୍ମ ନିଏ, ଏତିକି କାମନା ।" ଏହା ମଧ୍ୟ ଶପଥ । ମମତା, ମୋହ ଓ ମାୟାର ପରିସରକୁ ପରିବ୍ୟାପ୍ତ କରିବାର ବ୍ରତ । ମୁଁ ହିଁର ଅହମିକାରେ ଜଡ଼ ହେବାର ଆନନ୍ଦ ।

ଏହା ହେଲା ଗୋଟିଏ ଦିଗ । ବୁଦ୍ଧଦେବ କହିଛନ୍ତି ଓ ନିଜେ ସେଥିରେ ଅନୁବ୍ରତୀ ରହିଛନ୍ତି—ସର୍ବଜନ ହିତାୟ, ସର୍ବଜନ ସୁଖାୟ । ରାଜପ୍ରାସାଦ ଓ ଭୋଗବିଳାସର ଦାମ୍ଭିକ୍ୟ ଜୀବନ ତାଙ୍କୁ ରୁକ୍ଷ ଲାଗିଛି । ସେ ଜନଜୀବନର ସେବାରେ ନିଜକୁ ଆହୁତି ଦେଇଛନ୍ତି । ବେଦବେଦାନ୍ତର ମଧ୍ୟ ଘୋଷିତ ହୁଏ—

ସର୍ବେଽତ୍ର ସୁଖିନଃ ସନ୍ତୁ । ସର୍ବେ ସନ୍ତୁ ନିରାମୟାଃ ॥
ସର୍ବେ ଭଦ୍ରାଣି ପଶ୍ୟନ୍ତୁ । ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ॥

କାହିଁ, ନିଜ କଥା ତ ଏଥିରେ ନାହିଁ ? "ସର୍ବ"ଙ୍କ ପାଇଁ ବ୍ୟକ୍ତିସ୍ୱାର୍ଥ ଖର୍ବ, ଖଣ୍ଡିତ ଓ କ୍ଷୁଦ୍ର ହୋଇଅଛି । "ସର୍ବ" ପର୍ଯ୍ୟାୟରେ ସସାଗରାଧରା ଓ ସମଗ୍ର ସଂସାର ଅନ୍ତର୍ଭୁକ୍ତ କରାଯାଇଛି । ଗୀତାରେ ମଧ୍ୟ ବ୍ୟକ୍ତିକୁ "ସର୍ବଭୂତହିତେ ରତାଃ" ରହିବାକୁ ଉପଦେଶ ଦିଆଯାଇଛି । ମନୁଷ୍ୟ ଜୀବନ ବସ୍ତୁତଃ ସ୍ୱାର୍ଥାନୁସରଣର ସମଷ୍ଟି ଓ ସାରଣୀ ନୁହେଁ । ସ୍ୱାର୍ଥାନ୍ଧ ଜୀବନ ପଶୁଜଗତର ସ୍ୱଭାବ-ସୁଲଭ ଗୁଣ । ପରାର୍ଥ ଜୀବନ ହିଁ ମାନବିକ । ପର ପାଇଁ ମାନବ ପ୍ରାଣ ଦେଇପାରେ । ପ୍ରହ୍ଲାଦଙ୍କ ସାଧନା ସଫଳ ହୋଇଛି । ଈଶ୍ୱରୁ ନୃସିଂହ ଭକ୍ତାଧୀନ ହୋଇ ବାହାରିଛନ୍ତି ଓ ହିରଣ୍ୟକଶିପୁଙ୍କୁ ବିଦାରଣ କରିଛନ୍ତି । ଶେଷରେ ପ୍ରହ୍ଲାଦଙ୍କ କାମନା ଜଣାଇବାକୁ ଆହ୍ୱାନ ଦିଆଯାଇଛି । ସେ କିନ୍ତୁ ନିଜ ପାଇଁ କିଛି ଚାହିଁନାହାନ୍ତି । ଆହୁରି ମଧ୍ୟ "ନ କାମୟେ ସ୍ୱର୍ଗଂ, ନ କାମୟେ ରାଜ୍ୟ", କିନ୍ତୁ "କାମୟେ ଦୁଃଖତପ୍ତାନାଂ ପ୍ରାଣିନାମ୍ ଆର୍ତ୍ତିନାଶନଂ ।" ଏହାହିଁ କାମନା, ନିଷ୍କାମ କାମନା, ଦିବ୍ୟ କାମନା ଓ ମାନବ ଜୀବନର ଚରମ ଓ ପରମ କାମନା ।

ସବୁ କଥାରେ ଆମେ ଆମ ସ୍ୱାର୍ଥ ସାଧନ ପାଇଁ ସତତ ଚେଷ୍ଟିତ ରହିଛୁ । ଧନ, ମାନ, ବାହୁ-ବଳ ଓ କ୍ଷମତାର ଶକ୍ତିକୁ ଆମ ହାତରେ ରଖି ସମସ୍ତଙ୍କ ଚୁଟି ଟାଣୁଛୁ । ସବୁଠି ଆମ ଗୌରବଗାନ ହେଉ, ଏଥିପାଇଁ କାନ ଡେରୁଛୁ । ଆମ ବିଜୟବାନା ଫରଫର ହୋଇ ଉଡ଼ୁ, ଏଥିପାଇଁ ଆମେ ଅନାଇ ରହୁଛୁ । ବାସ୍ତବରେ ଆମେ କେଡ଼େ ଲଞ୍ଚୁଆ ହୋଇଯାଇଛୁ ? ଆମେ ତ ମିଠା କଥା ଶୁଣିବାକୁ ଭଲପାଉ—କିନ୍ତୁ ଏହା ଯଦି ଚାଟୁବାକ୍ୟ ହୋଇଯାଏ, ଆମେ ସେଥିରେ ଅଧିକ ଲୋଭୀ ହେଉଛୁ । ଆମେ ଜାଣିଶୁଣି ସେହି ପ୍ରତାରଣାରୁ ନିଜକୁ ମୁକ୍ତ କରିପାରୁନାହୁଁ । କେଡ଼େ ବଡ଼ ଜାଲରେ ଆମ ପାଇଁ ବିଛା ଯାଇଛି ! କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ରାଜା କଅଣ କଲେ ? ଆମ ବଂଶର ବିସ୍ତାର ପାଇଁ ଆମେ ସବୁ ସଙ୍କଳ୍ପ କରୁଥିବା ସ୍ଥଳେ, ସେ ନିଜ ବଂଶନାଶର ପ୍ରାର୍ଥନା କଲେ । ଆମେ କଅଣ ମହାଜ୍ଞାନୀ ଓ ସେ କଅଣ ମହାମୂର୍ଖ ? ନା, ଆମେ ଭୁଲବାଟ ଧରିଛୁ ଓ ସେ ବାସ୍ତବରେ ସତ୍ୟକୁ ଦେଖିପାରିଥିଲେ । ଉତ୍କଳର କଳାନିକେତନ କୋଣାର୍କର କଥାଟି ସେଇଆ, ଲୋକମୁଖରେ ଘୋଷି ହେଉଛି । ବାରଶ ବଢ଼େଇଙ୍କର କୀର୍ତ୍ତି ସେ ମହାନ୍ କଳାସୌଧ, କିନ୍ତୁ ନିଜ ପୁଅର ନୁହେଁ । ଆମର ବୃତ୍ତିବାଡ଼ି, ଧନ ଦୌଲତ ସବୁ ପୁଅ ପାଇଁ । ଆମ ପଇସା କଉଡ଼ି ଓ ପୌରୁଷର ଉତ୍ତରାଧିକାରୀ ଆମ ପୁଅ । କିନ୍ତୁ ଉତ୍କଳର କଳା ପରମ୍ପରା ଓ ଧର୍ମଧାରା ସେହି ଉତ୍କଳୀୟଙ୍କର, ବ୍ୟକ୍ତିବିଶେଷର ନୁହେଁ ।

ଭୀମଭୋଇ ଜଣେ ସନ୍ଥକବି, ଅନ୍ଧ ଓ କନ୍ଧ । ସାକ୍ଷାତ୍ ବ୍ରହ୍ମଙ୍କର ନିର୍ଗୁଣ, ନିରଞ୍ଜନ ଓ ନିରାଲମ୍ବ ସ୍ୱରୂପ ଭାବରେ ମହିମା ସ୍ୱାମୀଙ୍କୁ ଦେଖି କଅଣ ମାଗିଲେ—"ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।" ବିଶ୍ୱ ଜୀବନ ନିରାମୟ ଓ ଲୀଳାମୟ ହୋଇ ରହୁ । ଅଜ୍ଞାନର ଅନ୍ଧକାର ହଟିଯାଇ ବ୍ରହ୍ମଜ୍ଞାନାଲୋକ ଉଦ୍ଭାସିତ ହେଉ । ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଜଗତରେ ଏହି ଚେତନା ସୃଷ୍ଟି କରିଛି । ଗୋପବନ୍ଧୁ

ମଧ୍ୟ ଗାଇଛନ୍ତି—

"ନିଜ ସ୍ୱାର୍ଥ ଲାଗି ଜାତି ନୁହେଁ ହିନ୍ଦୁ,
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ।"

ଅକ୍ଟୋବର ତିରିଶ ତାରିଖ, ୧୯୮୪ ମସିହା। ପୁଣ୍ୟଭୂମି ଉତ୍କଳର ଐତିହାସିକ ପୀଠ ଭୁବନେଶ୍ୱରରେ ଆମ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରା ଗାନ୍ଧି ଏହି ସଙ୍କଳ୍ପର ବାଣୀ ବଜ୍ରନାଦରେ ଘୋଷଣା କରିଗଲେ—ତାଙ୍କର ପ୍ରତି ରକ୍ତବିନ୍ଦୁ ଦେଶ ପାଇଁ ଉତ୍ସର୍ଗୀକୃତ। ତାହା ହିଁ ଘଟିଛି ତହିଁ ପରଦିନ ତାଙ୍କ ଦିଲ୍ଲୀ ବାସଭବନର ଦ୍ୱାର ଦେଶରେ, ସମ୍ଭବତଃ ମାତ୍ର ବାର ଘଣ୍ଟାର ବ୍ୟବଧାନ ପରେ। ଦେଶବାସୀଙ୍କ ଲାଗି ଅକ୍ଟୋବର ୩୧ ତାରିଖ ପୁନଃ ସମର୍ପଣର ଦିବସ। ଅମର ଶହୀଦ୍ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଜୀବନ ଦାନର ଏହାହିଁ ଯଥାର୍ଥ ସ୍ମୃତି-ସ୍ମରଣ। ଏଥିସଙ୍ଗେ ତାଙ୍କ ଜନ୍ମଦିନ ନଭେମ୍ବର ୧୯ ତାରିଖ ଆମ ପାଇଁ ସଂହତିର ଶପଥ ଦିବସ। ଏହି ଜାତୀୟ ଏକତା ଦିବସର ଶପଥ ଆମେ ନିଷ୍ଠାରେ ଗ୍ରହଣ କରୁଛୁ —

"ଜାତୀୟ ଏକତା ଓ ସଂହତିର ସୁରକ୍ଷା ତଥା ସୁଦୃଢ଼ୀକରଣ ପାଇଁ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରିବାକୁ ମୁଁ ଏକାନ୍ତ ଭାବରେ ଶପଥ କରୁଛି।

ଆହୁରି ମଧ୍ୟ ମୁଁ ସ୍ୱୀକାର କରୁଛି ଯେ, ମୁଁ କଦାପି ହିଂସାଚରଣ କରିବି ନାହିଁ ଏବଂ ଧର୍ମ, ଭାଷା, ଅଞ୍ଚଳ ଭିତ୍ତିରେ ଯେଉଁସବୁ ବିବାଦ ଓ ପାର୍ଥକ୍ୟ ଉପୁଜିବ କିମ୍ବା ଅନ୍ୟ ରାଜନୈତିକ ବା ଅର୍ଥନୈତିକ ଦାବି ହେବ, ସେ ସବୁର ଶାନ୍ତିପୂର୍ଣ୍ଣ ଓ ସାମ୍ବିଧାନିକ ସମାଧାନ କରାଯିବ।"

ଏହି ଶପଥ ଓ ସମର୍ପଣ ମାମୁଲି ବିଷୟ ନୁହେଁ କିମ୍ବା କୌଣସି ଅତିଥିଙ୍କ ପରିଚାଳନାରେ ଉଚ୍ଚାରଣର ବିଷୟ ନୁହେଁ। କେତୋଟି ମୁହୂର୍ତ୍ତରେ ଏହାକୁ ଶୁଣି କହିଦେବାର କଥା ନୁହେଁ। କାନରେ ଶୁଣି ବା ଶପଥପତ୍ର ପଢ଼ି ଆବୃତ୍ତି କରିବାର ବିଷୟ ନୁହେଁ। ପ୍ରତିବର୍ଷର ନଭେମ୍ବର ମାସ ୧୯ ତାରିଖ ଦିନ ପ୍ରେରଣାରେ ଏକତ୍ର ହୋଇ ବିଧିରକ୍ଷା କରିବାର ସଙ୍କଳ୍ପ ନୁହେଁ। ଏହାହିଁ ଜାତିର ଓ ବ୍ୟକ୍ତିର ଜୀବନ ରକ୍ଷାର ଶପଥ। ପ୍ରତ୍ୟେକଙ୍କର ପ୍ରତିଟି ମୁହୂର୍ତ୍ତରେ ପ୍ରତିଦିନର ଶପଥ। ଏହି ଅନୁସାରେ ଆମେ ଆଚରଣ କରିବାର ଶପଥ—କଥାରେ ଓ କାର୍ଯ୍ୟରେ ତଥା ଚିନ୍ତାରେ। ଆମର ଏହି ଶପଥ ଅନୁଯାୟୀ ଆମକୁ ଅଗ୍ରସର ଓ ବିଶ୍ୱରନିଷ୍ଠ ହେବାକୁ ପଡ଼ିବ। ଏହା ହେଲେ ଆମ ଭାରତ ଓ ଆମେ ଭାରତୀୟ ବଞ୍ଚିବା, ଆଗେଇଯିବା ଓ ବିଶ୍ୱକୁ ସାହାଯ୍ୟ କରିବା। ଏଥିରେ ନିହିତ ଅଛି ସମସ୍ତଙ୍କର ଶାନ୍ତି, ପ୍ରଗତି ଓ ସମୃଦ୍ଧି।

ମହାତ୍ମା ଗାନ୍ଧି ଆମ ସ୍ୱାଧୀନତା ସଂଗ୍ରାମର ମହାନ୍ ସାରଥି। ସେ ଜାତିର ବାପୁ। ତାଙ୍କ ତ୍ୟାଗ, ସାହସ ଓ କଷଣ କଳନା କରିହେବ ନାହିଁ। କିନ୍ତୁ ସେ କଅଣ ନିଜ ପାଇଁ କିଛି

ଆଶା କରି ଗଲେ କି ? ତାଙ୍କ ମୂର୍ତ୍ତି ଗଢ଼ାଯିବ, ଫଳକ ଲେଖାଯିବ, ଅନୁଷ୍ଠାନ ନାମିତ ହେବ, ତାଙ୍କ ନାମରେ ସିନେମା କରାଯିବ, ତାଙ୍କ ଚିତ୍ର ସ୍ଥାନ ଅସ୍ଥାନରେ ଟଙ୍ଗାହୋଇ ରହିବ ଇତ୍ୟାଦି । ନା ନା—ତାଙ୍କ ଆକାଂକ୍ଷା ଓ ଶପଥ ହେଉଛି, ସ୍ୱାଧୀନ ଭାରତରେ କୌଣସି ଲୋକର ଚକ୍ଷୁରୁ ଲୋତକ ବହିବ ନାହିଁ । ସତ୍ୟ, ନ୍ୟାୟ ଓ ଅହିଂସାର ଦେଶ ଓ ବିଶ୍ୱ ହେବ । ପଣ୍ଡିତ ନେହେରୁଙ୍କ ଜନ୍ମଦିନ ହେଉଛି ଶିଶୁଦିବସ ଓ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଜନ୍ମଦିନ ହେଉଛି ଗୁରୁଦିବସ । ଏସବୁ ସେହି ଚିନ୍ତାର ଦୃଷ୍ଟାନ୍ତ, ଦେଶ ପାଇଁ ତ୍ୟାଗ । ଦେଶର ସହୃତ ପାଇଁ ଶପଥ ।

କିନ୍ତୁ ଅହମିକାଗ୍ରସ୍ତ ମାନବ ଶପଥପାଠ ପରେ ଏହାକୁ ଭୁଲିଯିବା ଅସମ୍ଭବ ନୁହେଁ ! ଶପଥର ପ୍ରେରଣାରେ ସାମୟିକ ଓ ସାମାନ୍ୟ ପରିବର୍ତ୍ତନ ପରେ ସେ ଅନେକ ସମୟରେ ପୂର୍ବାବସ୍ଥାକୁ ଫେରିଆସନ୍ତି । ଲୋକାଗ୍ରହର ଊର୍ଦ୍ଧ୍ୱକୁ ସେ ଉଠିପାରନ୍ତି ନାହିଁ । ହର୍ଷ, ବିଷାଦ, ଶୋକ ଆଦି ଆବେଗିକ ପରିସ୍ଥିତିରେ ମଧ୍ୟ ଅହମିକା ଓ ଅଭିମାନର ମୋହରେ ସେ ଅଭିଭୂତ ହୋଇପଡ଼ନ୍ତି । ସେଥିପାଇଁ ସମଗ୍ର ସମାଜରେ ଶପଥର ନିଷ୍ଠାକୁ ନିରନ୍ତର ଜାରି ରଖିବାକୁ ହେବ । ଅନେକ ସମୟରେ ରାଜନୀତି ଓ ରାଜନୀତିର ଉପସ୍ତର ଶକ୍ତିକ ପ୍ରତିଷ୍ଠାକୁ ବଜାୟ ରଖିବା ପାଇଁ ଜାତି, ଧର୍ମ, ବର୍ଣ୍ଣ ଆଦି ସଙ୍କୀର୍ଣ୍ଣତାର ଉପଯୋଗ କରନ୍ତି । ଧନମଦ ପରି କ୍ଷମତାମଦ ଉତ୍କଟ ହୋଇପଡ଼େ । ସାମାଜିକ ନ୍ୟାୟ ପରିବର୍ତ୍ତେ ଦୁରଭିସନ୍ଧି ଓ ସ୍ୱାର୍ଥସିଦ୍ଧି ଏକମାତ୍ର ଉଦ୍ଦେଶ୍ୟ ହୁଏ । ସତ୍ୟ, ଶାନ୍ତି ଓ ସମ୍ବିଧାନର ନିଷ୍ଠା ରହେ କି ? ଅର୍ଥନୈତିକ ବୈଷମ୍ୟ ବିଭିନ୍ନ ଅଞ୍ଚଳ, ଗୋଷ୍ଠୀ ଓ ଜନପଦକୁ ଆଧାରିତ କରି ହିଂସାର ବିସ୍ଫୋରଣ ସୃଷ୍ଟିକରେ । ଯୋଜନାର ଦୁର୍ବଳତାରୁ ମାନବିକତା, ସମତା ଓ ସୁଦୃଷ୍ଟି ଅପସରି ଯାଏ । ଏପରି ସ୍ଥଳରେ ମଧ୍ୟ ଶପଥ ଏକ ଜାତୀୟ କାର୍ଯ୍ୟକ୍ରମ ନ ହୋଇ ପିଲାଳିଆ ପ୍ରହସନରେ ପରିଣତ ହୋଇଥାଏ । ଅର୍ଥଲୋଭୀ ଯାଦୁକର ରାମ ଓ ରାବଣର ଭୂମିକାକୁ ଏକକାଳୀନ ଦର୍ଶକଙ୍କ ମନଲୋଭା କରିପାରନ୍ତି । ଶପଥ ସେ ପର୍ଯ୍ୟାୟଭୁକ୍ତ ନୁହେଁ । ଜାତୀୟ ଇତିହାସ ଓ ଗୌରବ ଆମକୁ ମଧ୍ୟ ନାନା କାରଣରୁ କଥା, କାର୍ଯ୍ୟ, ଚିନ୍ତାରେ ଅନୁପ୍ରାଣିତ କରେନାହିଁ ।

ଜାତୀୟ ସହୃତରେ ଆମେ ଐକାନ୍ତିକ ଓ ଏକନିଷ୍ଠ ହେବା । ଆମର ସର୍ବବିଧ ଚିନ୍ତା ଓ ବିଶ୍ୱର ସମସ୍ତଙ୍କ ପାଇଁ ଏକ ହେବା ଉଚିତ ।

---

# ଆମ ସଂସ୍କୃତି ଓ ଆମ ଶିକ୍ଷା

ଶିକ୍ଷା ହେଉଛି ଏକ ମାନବିକ ପ୍ରକ୍ରିୟା । ଏହା ମାନବ ଜୀବନରେ ବୈଶିଷ୍ଟ୍ୟର ପରିଚୟ ଦିଏ । ଇତର ପ୍ରାଣୀ ଜୀବନରେ ଶିକ୍ଷାର ଭୂମିକା ନାହିଁ ବା ସାମାନ୍ୟ । କିନ୍ତୁ ମନୁଷ୍ୟ ଜୀବନରେ ଶିକ୍ଷା ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଲାଗିରହିଛି । ମନୁଷ୍ୟ ପାଇଁ ଏହା ଏକ ନିରନ୍ତର ପ୍ରକ୍ରିୟା । ମନୁଷ୍ୟ ଜୀବନରେ ମଣିଷପଣିଆ ବିକାଶ କରିବା ହେଉଛି ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ । ସେ ନିଜ ପରିବାରରେ ଜଣେ ବ୍ୟକ୍ତି ଓ ସମାଜରେ ଜଣେ ନାଗରିକ । ସେ ଜଣେ ଆଜୀବନ ଶିକ୍ଷାର୍ଥୀ । ସେ ମଧ୍ୟ ଜଣେ ଉତ୍ପାଦନକାରୀ କର୍ମକ୍ଷମ ବ୍ୟକ୍ତି । ଏପରି ସବୁ ଭୂମିକା ମନୁଷ୍ୟକୁ ନିଜ ଜୀବନକାଳ ମଧ୍ୟରେ ବହନ କରିବାକୁ ପଡ଼ିଥାଏ ଓ ଏଥିପାଇଁ ସର୍ବାଧିକ ଆବଶ୍ୟକ ମାନବିକତା । ମନୁଷ୍ୟ ସୃଷ୍ଟିର ମୂଳରେ ରହିଛି କବିଙ୍କର ସେହି କଥାଟି "କାହିଁ ବିନ୍ଦୁ ତା କାହିଁ ପ୍ରେମସିନ୍ଧୁର, ଯା'ର ପ୍ରାପତି ଲାଗି ଦେବତା ନର"। ମନୁଷ୍ୟ ଜନ୍ମଲାଭ କରେ, ସମସ୍ତଙ୍କ ସହିତ ମିଳିମିଶି ଭାଇପରି ସେ ଚଳିବ, ସ୍ନେହ କରିବ, ସେବାକରିବ, ଅନ୍ୟମାନଙ୍କ ପାଇଁ ତ୍ୟାଗ କରିବ, ସମାଜ, ଦେଶ ଓ ବିଶ୍ୱକୁ ଉନ୍ନତ କରିବ ଇତ୍ୟାଦି । ଏଥିରେ ସେ ନିଜେ ଆତ୍ମୋନ୍ନତି ଲାଭ କରିବ । ସେ ସମସ୍ତଙ୍କର ଓ ସମସ୍ତେ ତାଙ୍କର—ଏପରି ସ୍ନେହ, ସୁଖ ଓ ଶାନ୍ତିର ରଜ୍ଜୁରେ ବନ୍ଧାହୋଇ ସେ ରହିବ । ଏହାହିଁ ମନୁଷ୍ୟ ଜୀବନର ସାର୍ଥକତା—ତାର ମାନବିକତା ଓ ଏହାହିଁ ନରର ନାରାୟଣତ୍ୱ ।

ଆଜି ସାରା ବିଶ୍ୱରେ ଏହି ପ୍ରକ୍ରିୟାଟି ବିପନ୍ନ । ବିଶେଷକରି ଆମ ଦେଶରେ ଶାନ୍ତି,ଶୃଙ୍ଖଳା ଓ ସହନଶୀଳତାର ଅବକ୍ଷୟ ଘଟୁଛି । ହୁଏନସାଂ, ଫାହିୟାନ୍ ପ୍ରଭୃତି ପରିବ୍ରାଜକମାନଙ୍କ ବିବରଣୀରୁ ଜଣାଯାଏ, ପ୍ରାଚୀନ ଭାରତର ସମାଜରେ କ୍ଳେଶ ନଥିଲା, ଗୃହ ଉନ୍ମୁକ୍ତ ରହୁଥିଲା, ଲୋକେ ସଦାଚରଣ କରୁଥିଲେ । କିନ୍ତୁ ଆଜି ଦ୍ୱେଷ, ବାଦ, ବିସମ୍ବାଦ, କଳିକନ୍ଦଳ ବଢ଼ିଛି । ଦଙ୍ଗା, ଡକାୟତି, ହିଂସା, ହାଣକାଟ ଆଦିର ସଂଖ୍ୟା ବଢ଼ିଯାଇଛି । ସେ ଯୁଗର ଉଦାହରଣ କାହିଁ ? ଆଜି ଅତି ମାତ୍ରାରେ ସଙ୍କୀର୍ଣ୍ଣତା, ସ୍ୱାର୍ଥପରାୟଣତା ଓ ଅସମନ୍ୱୟତା । ଏପରି ସବୁ ଘଟିବା ଫଳରେ ଦେଶରେ ସଂହତିର ଅଭାବ ଦେଖାଯାଉଛି । ଶାନ୍ତି, ପ୍ରଗତି ଓ ସମୃଦ୍ଧିର ମୂଳକାଠି ହେଉଛି ସଂହତି । ସଂହତିର ଅଭାବରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ବଢ଼ିଯିବ । ଅସ୍ଥିରତାର ଭାବର ଅଭାବ ପରିଲକ୍ଷିତ ହେବ । ଦେଶ ଦୁର୍ବଳ ହୋଇଯିବ । ଏହି ଦୁର୍ବଳତାର ସୁଯୋଗ ନେବେ ବହିଃଶତ୍ରୁ । ଅତଏବ ଜାତୀୟ ସଂହତି ଏକାନ୍ତ ଆବଶ୍ୟକ । ଐକ୍ୟ ଓ ଏକାତ୍ମତା ସମଗ୍ର ଦେଶରେ ସୁଦୃଢ଼ ହେବା ଉଚିତ । ଆମ୍ଭମାନଙ୍କ କଥା, କାର୍ଯ୍ୟ ଓ ଚିନ୍ତାରେ ଦେଶପ୍ରାଣତା

ସୁସ୍ପଷ୍ଟ ହେବା ଉଚିତ । ଆମ୍ଭମାନଙ୍କ ଆଚରଣ, ଚିନ୍ତାଧାରା ଓ ମନୋଭାବରେ ଦେଶାନୁ-ରାଗ ରହିବା ଆବଶ୍ୟକ । ଜାତୀୟ ସଂହତି ହେଉଛି ସ୍ୱଦେଶମମତା । ସ୍ୱଦେଶପ୍ରୀତି ଆମ୍ଭମାନଙ୍କୁ ଦେଶର ଅଗଣିତ ନାଗରିକଙ୍କ ଏକତା କାୟମ ରଖେ, ଦୃଢ଼ ମନୋବଳ ଆସେ । ଦେଶର ଗୌରବାନୁରାଗରୁ ଗର୍ବ ଜାତ ହୁଏ । ଏଥିପାଇଁ ପ୍ରାଣପାତ ବି ତୁଚ୍ଛ ମନେହୁଏ । ଏହି ଜାତୀୟ ଐକ୍ୟର ଅର୍ଥ ଏକାକାର ନୁହେଁ । ସମସ୍ତଙ୍କୁ ସମାନ କରିଦେବା ନୁହେଁ । ବରଂ ବିଭିନ୍ନ ସମ୍ଭାବନାର ଶକ୍ତି ଓ ସାମର୍ଥ୍ୟ ପ୍ରତି ସମ୍ମାନ ଦେଖାଇ ଦେଶର ଗୌରବକୁ ବହୁଗୁଣିତ କରିବାକୁ ହୁଏ । ଆହୁରି ମଧ୍ୟ ସଂହତି ଏକ ନାସ୍ତିସୂଚକ ବିଷୟ ନୁହେଁ । ଐକ୍ୟର ଅଭାବକୁ ସଂହତିର ପ୍ରତିଷ୍ଠା କରାଯାଉଛି ବୋଲି ଏପରି ଭାବନା ମନକୁ ଆସିପାରେ । କିନ୍ତୁ ବସ୍ତୁତଃ ଏହାହିଁ ସଂହତିର କଳ୍ପନା ନୁହେଁ । ଜାତୀୟ ଇତିହାସରେ ଐକ୍ୟର ଉଦାହରଣ ଅନେକ ପ୍ରଦର୍ଶନ କରାଯାଇଛି । ମରିଚି ଶିଙ୍ଗ ଫଟା, ଯୁଝିଲ ବେଳକୁ ଗୋଟା—ଏହା ହେଉଛି ଆମର ଚଳଣି । ଆମ ଧର୍ମ, ଭାଷା, ଜାତି, ବର୍ଣ୍ଣ ଆଦି ବିଭିନ୍ନତାର ସମାହାର । ଆଞ୍ଚଳିକ ତାରତମ୍ୟ ମଧ୍ୟ ରହିଛି । ଉଚିତ ଚିନ୍ତାଧାରାର ଅଭାବରୁ ଏକାତ୍ମତାର ସ୍ୱରୂପ ଅନେକ ସମୟରେ କ୍ଷୀଣ ହୋଇପଡ଼େ ବା ଏହାକୁ ଦୁର୍ବଳ କରିଦିଆଯାଏ । ତେଣୁ ଏହିସବୁ ବହୁବିଧ ବିଭିନ୍ନତା ମଧ୍ୟରେ ଅଭେଦତ୍ୱ ପ୍ରତିଷ୍ଠା କରିବା ହେଉଛି ଜାତୀୟ ସଂହତି । ଏହା ହେଉଛି ଏକ ଅସ୍ତି-ସୂଚକ ବିଷୟ ଓ ଏହାର ଦୃଢ଼ୀକରଣ ତଥା ଶ୍ରୀବୃଦ୍ଧି ସାଧନ ପାଇଁ ନିରନ୍ତର ସର୍ବବିଧ ଉଦ୍ୟମ ହେବା ଉଚିତ ।

ଏଥିପାଇଁ ଶିକ୍ଷା, ଶିକ୍ଷାଳୟ ଓ ଶିକ୍ଷକଙ୍କୁ ନିୟୋଜିତ କରାଯିବା ଉଚିତ । ପିଲା-ମାନଙ୍କ ମନରେ ସ୍ୱଦେଶପ୍ରୀତି ଜନ୍ମାଇବାପାଇଁ ଦେଶପ୍ରେମୀ ଅମର ଶହୀଦ୍‌ମାନଙ୍କ କାହାଣୀ କୁହାଯିବା ଦରକାର । ସ୍ୱାଧୀନତା ସଂଗ୍ରାମର ଇତିହାସ ଓ ସେଥିରେ ତ୍ୟାଗ, ସେବା ଓ ଜୀବନ ଉତ୍ସର୍ଗର କାହାଣୀଗୁଡ଼ିକୁ ଉପସ୍ଥାପନ କରିବା ଆବଶ୍ୟକ । ଜାତୀୟ ପତାକା, ଜାତୀୟ ସଂଗୀତ ଓ ଜାତୀୟ ସଙ୍କେତ ପ୍ରତି ସମ୍ମାନ ଜ୍ଞାପନ କରାଯିବ । ଏସବୁର ଆହ୍ୱାନ ଆଜିର ଶିକ୍ଷାର୍ଥୀମାନଙ୍କ ପ୍ରତି କଅଣ ରହିଛି ଏହାର ଆଲୋଚନା କରାଯିବ । ଦେଶପ୍ରେମର ସଂଗୀତ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଆବୃତ୍ତି କରାଯିବ । ଏସବୁ କାର୍ଯ୍ୟରେ ନିଷ୍ଠା ପ୍ରକାଶ ପାଇବ । ସମଗ୍ର ଶିକ୍ଷାଳୟ ଯେପରି ଏହି ଉଦ୍ଦେଶ୍ୟରେ ଅନୁକୂଳ ହୁଏ ସେଥିପ୍ରତି ଧ୍ୟାନ ଦିଆଯିବ । ପାଠ୍ୟକ୍ରମର ବିଭିନ୍ନ ବିଷୟରେ ଏସବୁ ଆବଶ୍ୟକସ୍ଥଳେ ସ୍ଥାନପାଇବ । ଏସବୁ ବିଷୟ ବିଦ୍ୟାର୍ଥୀମାନଙ୍କ ଉପରେ ଲଦିଦିଆଯାଇ ପାରିବ ନାହିଁ । ସେମାନଙ୍କ ମନ ଓ ହୃଦୟରେ ଏହି ଜାତୀୟଭାବନା ଓ ଆନୁଗତ୍ୟ ଯେପରି ସ୍ୱତଃ ଜାଗିଉଠେ ଓ ସେମାନଙ୍କ ବ୍ୟକ୍ତିତ୍ୱର ଅଙ୍ଗୀଭୂତ ହୋଇଯାଏ ସେଥିପ୍ରତି ନଜର ରଖି କାର୍ଯ୍ୟ କରାଯିବ ।

ଜଣେ କେହି ସ୍ୱଦେଶବତ୍ସଳ ମନୀଷୀ ଅନୁଭବ କରିଥିଲେ ଯେ ସେ ଆମ ଦେଶରେ ହିନ୍ଦୁ ଦେଖିଛନ୍ତି; ମୁସଲମାନ, ଖ୍ରୀଷ୍ଟିଆନ ପ୍ରଭୃତି ବିଭିନ୍ନ ଧର୍ମାବଲମ୍ବୀ ଲୋକ ଦେଖିବାକୁ ପାଇଛନ୍ତି । ସେହିପରି ଭାବରେ ଓଡ଼ିଆ, ବଙ୍ଗାଳୀ, ତେଲୁଗୁ, ତାମିଲ ପ୍ରଭୃତି ବିଭିନ୍ନ ଭାଷାଭାଷୀ

ଲୋକଙ୍କ ସମ୍ପର୍କରେ ସେ ଆସିଛନ୍ତି । କିନ୍ତୁ ଏମାନଙ୍କ ମଧ୍ୟରେ ଭାରତୀୟ କିଏ ? ଏହି ଭାରତୀୟଙ୍କୁ ସେ ଦେଖିବାକୁ ପାଇନାହାନ୍ତି । ଅର୍ଥାତ୍ ଆମ୍ଭେମାନେ ବିଭିନ୍ନ ଭାଷାଭାଷୀ ଓ ବିଭିନ୍ନ ଧର୍ମାବଲମ୍ବୀ ହେଲେହେଁ ଆମ୍ଭେମାନେ ପ୍ରତ୍ୟେକେ ବିଭିନ୍ନ ଜାତି, ଧର୍ମ, ଭାଷା ଆଦି ନିର୍ବିଶେଷରେ ଭାରତ ମାଟିର ସନ୍ତାନ ଓ ଭାରତୀୟ, ଏହି ଭାବନା ଜାଗ୍ରତ ହେଉନାହିଁ । ଏହା ଫଳରେ ଆମ୍ଭେମାନେ ବିଚ୍ଛିନ୍ନତାବାଦୀ ହୋଇଯାଉଛୁଁ । ଆମ ଧର୍ମ, ଭାଷା ଓ ଅଞ୍ଚଳକୁ କେନ୍ଦ୍ରକରି ଆମ ସ୍ୱାର୍ଥକୁ ଆମେ ବଡ଼ କରୁଛୁଁ । ଏହା ଫଳରେ ସଂଘର୍ଷ ହେଉଛି; କଳହର କୋଳାହଳ ବୃଦ୍ଧି ହୋଇଯାଉଛି । ଆତଙ୍କ ସୃଷ୍ଟି କରାଯାଉଛି । ଯଦି ଆମ ଦେଶର ଅଖଣ୍ଡତା ଓ ଅସ୍ତିତ୍ୱ ପ୍ରତି ଧ୍ୟାନଦେଇ ଏହାର ସୁରକ୍ଷା ଓ ଶ୍ରୀବୃଦ୍ଧି ନକରୁ ତେବେ ଆମ ଜାତି, ଧର୍ମ, ଭାଷା ଆଦି ଦୂରର କଥା, ଆମେ ବଞ୍ଚିବା କି ? ସେଥିପାଇଁ କୁହାଯାଏ ଯେ ଆମେ ଏକତ୍ର ଓ ମିଳିତ ହେଲେ ଆମର ବିଜୟ ସୁନିଶ୍ଚିତ, କିନ୍ତୁ ଆମେ ବିଚ୍ଛିନ୍ନ ଓ ବିଭକ୍ତ ହୋଇଗଲେ ଆମର ବିଳୟ ଘଟିବ ।

ସୁତରାଂ ଆମ ମନରେ ଭାରତୀୟଙ୍କର ସ୍ୱାଭିମାନ ସୃଷ୍ଟି କରାଯିବ । ଆମ ଦେଶ ବିଶାଳ । ଏହାର ଗୌରବାବହ ଇତିହାସ ବହୁ ପ୍ରାଚୀନ ଓ ଏହାର ବହୁବିଧ ସମସ୍ୟାର ସଫଳ ସମାଧାନ କରିବାରେ ଆମର ସାମର୍ଥ୍ୟ ରହିଛି । ଏ ବିଷୟରେ ଆମର ପ୍ରତ୍ୟକ୍ଷ ଧାରଣା ଓ ପ୍ରତ୍ୟୟ ଜାତହେବା ଉଚିତ । ଏହା ବ୍ୟତୀତ ଆମ ସମସ୍ତଙ୍କ ସହଯୋଗରେ ଏହି ଦେଶର ଯୋଜନାବଦ୍ଧ ବିକାଶ ହେଉଛି ଓ ହେବ—ଏଥିରେ ଆମର ବିଶ୍ୱାସ ଓ ଭରସା ରହିବା ଉଚିତ । ଏହି ଦୃଷ୍ଟିରୁ ଶିକ୍ଷକ ଓ ଶିକ୍ଷାର୍ଥୀମାନଙ୍କର ପରିଭ୍ରମଣ ଓ ପରିଦର୍ଶନର ବ୍ୟବସ୍ଥା କରାଯିବ । ବିଭିନ୍ନ ଦର୍ଶନୀୟ ବସ୍ତୁ ଓ ସ୍ଥାନ ତଥା ବିକାଶ ପ୍ରକଳ୍ପ-ଗୁଡ଼ିକ ଏହାର ଅନ୍ତର୍ଭୁକ୍ତ କରାଯିବ । ବିଭିନ୍ନ ରାଜ୍ୟ, ଶିକ୍ଷାନୁଷ୍ଠାନର ଶିକ୍ଷକ ଓ ଶିକ୍ଷାର୍ଥୀ-ମାନଙ୍କ ମଧ୍ୟରେ ବିନିମୟ କାର୍ଯ୍ୟକ୍ରମ ଆୟୋଜନ କରାଯିବ । ଏହି ଦୃଷ୍ଟିରୁ ୧୦ + ୨ + ୩ ଶିକ୍ଷାପଦ୍ଧତି ସାରା ଦେଶରେ ପ୍ରବର୍ତ୍ତନ କରାଯାଇଛି । "ସତ୍ୟମେବ ଜୟତେ", "ସା ବିଦ୍ୟା ଯା ବିମୁକ୍ତୟେ", "ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି", "ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ଂ," "ଆନୋଭଦ୍ରାଃ କ୍ରତବୋୟନ୍ତୁ ବିଶ୍ୱତଃ" । ନିଷ୍କାମ କର୍ମ, ଯମ ନିୟମ ପ୍ରଭୃତି ସଂସ୍କୃତିର ମୂଲ୍ୟବୋଧଗୁଡ଼ିକ ବିଷୟରେ ଶିକ୍ଷା ଦିଆଯିବ ।

ବିଭିନ୍ନ ସ୍ତରର ଶିକ୍ଷାନୁଷ୍ଠାନରେ ଜାତୀୟ ଚରିତ୍ରର ବିକାଶ ପାଇଁ ବ୍ୟବସ୍ଥା କରାଯିବ । ଜାତୀୟ ଚରିତ୍ରହିଁ ଆମର ମାନବିକ ସମ୍ବଳ ବିକାଶର ପରିଚାୟକ । ଜାତୀୟ ଚରିତ୍ର କ୍ଷୀଣ, ସଙ୍କୀର୍ଣ୍ଣ ଓ କ୍ଷୁଦ୍ର ହୋଇଗଲେ, ଆମ ମାନବିକ ସମ୍ବଳର ଉତ୍ସ କେଉଁଠୁ ଆସିବ ?

ପ୍ରତ୍ୟେକ ବ୍ୟକ୍ତିର ତାଙ୍କ ପିତାଙ୍କ ଅନୁଗତ ଧର୍ମ, ମାତୃଭାଷା ଓ ସ୍ୱକୀୟ ଜନ୍ମସ୍ଥାନ ରହିଛି । ସେହି ଧର୍ମପ୍ରତି ଆନୁଗତ୍ୟ, ଭାଷାପ୍ରତି ମମତା ଓ ଜନ୍ମସ୍ଥାନ ପ୍ରତି ଗୌରବ ରହିଛି ଓ ରହିବା ସ୍ୱାଭାବିକ । ଆମର ବନ୍ଧୁ ବାନ୍ଧବ, ସହାଧ୍ୟାୟୀ, ସହକର୍ମୀଙ୍କର ମଧ୍ୟ ସେ ପ୍ରକାର ଆନୁଗତ୍ୟ, ମମତା ଓ ଗୌରବ ରହିବା ଦରକାର—ଏହି ସ୍ୱୀକୃତି ଦେବା ଉଚିତ । ଏହାହିଁ ମାନବିକତା ।

ଆମେ କହୁଁ "ମାତୃଭୂମି, ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ, ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ?" ଠିକ୍ ସେହିପରି ସମସ୍ତଙ୍କର ମାତୃଭାଷା ରହିଛି, ଧର୍ମ ରହିଛି, "ମଜହବ ନହିଁ ଶିଖାତା, ଆପସ୍ ମେ ବୈର ରଖନା" । ଧର୍ମ ଓ ଧର୍ମ-ନିରପେକ୍ଷତା କେବେହେଁ ପରସ୍ପର ବିରୋଧୀ ନୁହେଁ । ତେଣୁ ବିଭିନ୍ନ ଧର୍ମର ସାରସତ୍ୟ ଏକ ଓ ଏହାକୁ ଆମେ ଅଧ୍ୟୟନ କରିବା । ମାନବ ଭାବରେ ବିଭିନ୍ନ ଧର୍ମ ଓ ଭାଷାର ଲୋକମାନେ ଏକ ଓ ଅଭିନ୍ନ—ଏହାକୁ ଶିକ୍ଷାମାଧ୍ୟମରେ ହୃଦୟଙ୍ଗମ କରିବା । ଜାତୀୟ ସଂହତି ଶିବିର ଆୟୋଜନ କରାଯାଉଛି । ଏହାକୁ ଆହୁରି ସୁଦୃଢ଼ ଓ ଉଦ୍ଦେଶ୍ୟାନୁକୂଳ କରାଯିବ । ବିଭିନ୍ନ ଭାରତୀୟ ଭାଷାର ସଂଯୋଜକ ଲିପି ଭାବରେ ଦେବନାଗରୀ ଲିପିକୁ ଗ୍ରହଣ କରାଗଲେ ଭାବଗତ ଏକାତ୍ମତା ବୃଦ୍ଧି ପାଇବ । ଶିକ୍ଷାର ସବୁ ସ୍ତରରେ ବ୍ୟକ୍ତିଗତ ଉତ୍କର୍ଷ ପ୍ରତି ଅଧିକ ଧ୍ୟାନ ଦିଆଯାଉଛି । ପାଠ୍ୟ ବିଷୟର ଅଧ୍ୟୟନ, କ୍ରୀଡ଼ା, ସାଂସ୍କୃତିକ କାର୍ଯ୍ୟକ୍ରମ ଆଦି ଦ୍ୱାରା ଏହା ସାଧନ କରାଯାଉଛି । ଏପରି ଏକତରଫା ଧ୍ୟାନ ନ ଦେଇ ସାମାଜିକ ପରିବେଶରେ ବ୍ୟକ୍ତିତ୍ୱର ବିକାଶ କରିବା ପାଇଁ ଦଳଗତ କାର୍ଯ୍ୟ, ଯୌଥ ଆଲୋଚନା, ଦଳଗତ ପ୍ରତିଯୋଗିତା ଉପରେ ଗୁରୁତ୍ୱ ଦେବା ଉଚିତ । ଏହା ମଧ୍ୟ ମାନବିକତା ବିକାଶର ଅନ୍ୟ ଏକ ଦିଗ ହେବ । "ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ, ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷା ମହେ ।" ପ୍ରାଣୀଙ୍କୁ ମିତ୍ର ଚକ୍ଷୁରେ ଆମେ ଦେଖିବା, ସମସ୍ତ ମିତ୍ର ଚକ୍ଷୁରେ ମଧ୍ୟ ସେମାନଙ୍କୁ ସମାଲୋଚନା କରିବା । ଏହାହିଁ ହେବ ସଂହତି ଓ ସେଥିରୁ ହେବ "ଜାତୀୟ ମମତା, ବିଶ୍ୱଜନ ପ୍ରୀତି" । ବସୁଧୈବ କୁଟୁମ୍ବକମ୍ ମଧ୍ୟ । ବସ୍ତୁତଃ ଆମ୍ଭେମାନେ ଜାତୀୟ ମନୋଭାବାପନ୍ନ ହେବା ସଙ୍ଗେ ସଙ୍ଗେ ସହଜରେ ଆନ୍ତର୍ଜାତିକ ହୋଇପାରିବା । ଏଥି ମଧ୍ୟରେ ବିରୋଧ ରହିବ ନାହିଁ । ଭାଷା, ଭୂଗୋଳ, ଇତିହାସ, ସମାଜବିଜ୍ଞାନ, ବିଜ୍ଞାନ ଆଦି ପାଠ୍ୟ ବିଷୟରେ ଶିକ୍ଷାମାଧ୍ୟମରେ ଆମ ଦୃଷ୍ଟି ଓ ଦିଗ୍‌ବଳୟ କ୍ରମେ ବିସ୍ତାରିତ ହୋଇଯିବ । ଆମ କ୍ଷୁଦ୍ର ପରିବାରର ସୀମା ବଢ଼ିବଢ଼ି ଯାଇ ଆମ ମନ ମଧ୍ୟରେ ବିଶ୍ୱ ପରିବାରର ଚିନ୍ତା ସ୍ଥାନ ପାଇବ ।

ଏପରି ସ୍ଥଳରେ ସଂକୀର୍ଣ୍ଣତା ସର୍ବତୋଭାବରେ ପରିହାର କରିବାକୁ ପଡ଼ିବ । ଏହା ମାନବିକତାର ପରିପନ୍ଥୀ । ଏହାକୁ ବର୍ଜନ କରିବା ପାଇଁ ସକଳ ନୀତି ଶାସ୍ତ୍ରରେ ପରାମର୍ଶ ଦିଆଯାଇଛି । ସମାଜ ବିଜ୍ଞାନୀମାନେ ମଧ୍ୟ ଏହାକୁ ସମର୍ଥନ କରନ୍ତି ନାହିଁ । "ମୋ ପାଇଁ ମୁଁ ଓ ମୋର ସବୁ କିଛି"—ଏହି ମନୋଭାବ ଘୋର ବିପର୍ଯ୍ୟୟର କାରଣ । ଏହା ଯୁଗେ ଯୁଗେ ପ୍ରମାଣିତ ହୋଇଅଛି । ଏହି ସଂକୀର୍ଣ୍ଣତା ଅହମିକା ନାମରେ ପରିଚିତ । ଏହାହିଁ ଲଘୁଚେତାମାନଙ୍କର ଲକ୍ଷଣ । "ଉଦାରଚରିତାନାନ୍ତୁ ବସୁଧୈବ କୁଟୁମ୍ବକମ୍" । ବେଦାନ୍ତ ଯୁଗରୁ ଏପର୍ଯ୍ୟନ୍ତ ସାଧୁସନ୍ଥମାନେ ଏହି ଜୀବନ ଯାପନ କରିଛନ୍ତି । ଏଥିପାଇଁ ସେମାନେ ଜୀବନଧାରଣ କରିଛନ୍ତି । ଏହାହିଁ ଆମ ଭାରତୀୟ ପରମ୍ପରା ଓ ସଂସ୍କୃତିର ଚିରନ୍ତନ ମୂଲ୍ୟବୋଧ । ଆଧୁନିକ ପରିଭାଷାରେ ଏହା ଗଣତାନ୍ତ୍ରିକ ମୂଲ୍ୟବୋଧ ନାମରେ ଅଭିହିତ । ନିଜେ ବଞ୍ଚି ଅନ୍ୟମାନଙ୍କୁ ବଞ୍ଚେଇବା (Live and let live) ହେଉଛି ଏହାର

ମୂଳ କଥା । ପରିବାର, ପାଠଶାଳା ଓ ସମାଜରେ ଏହାର ପ୍ରୟୋଗ ପାଇଁ ସମସ୍ତ ସୁଯୋଗ ଦିଆଯିବ । ପରସ୍ପର ସହଯୋଗିତା, ସହାବସ୍ଥାନ ଓ ସହନଶୀଳତାର ଧ୍ୟାନ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତଙ୍କର ରହିବ । ଏହା କଲେ ଆମେ ପରିପୂର୍ଣ୍ଣ ବ୍ୟକ୍ତି ହେବା ପରିବର୍ତ୍ତେ ଦେବଦୁର୍ଲଭ ଭାରତୀୟ ଓ ବିଶ୍ୱବନ୍ଦନୀୟ ମାନବ ହୋଇପାରିବା । ଶିକ୍ଷାସ୍ତରର ସମସ୍ତ ସ୍ତରରେ ଓ ସକଳ କକ୍ଷରେ ଏହାକୁ କାର୍ଯ୍ୟକାରୀ କରିବାକୁ ପଡ଼ିବ । ଅତଏବ ଜାତୀୟ ସଂହତି ପାଇଁ ଶିକ୍ଷା ହେଉଛି ମାନବିକ ଶିକ୍ଷା ଓ ମାନବିକତା ପାଇଁ ଶିକ୍ଷା ।

ଅନେକ ସମୟରେ ଦାବି ଓ ଦାୟିତ୍ୱ ମଧ୍ୟରେ ସମନ୍ୱିତ ସମ୍ପର୍କ ସ୍ଥାପନ କରିନପାରି କିଛି ମନୁଷ୍ୟ ପରି ବାଟବଣା ହୋଇ ଅଧିକାରକୁ ଅଗ୍ରାଧିକାର ଦେଇ ଆମେ କର୍ତ୍ତବ୍ୟରେ ଅବହେଳା କରୁ । ଦେଶର ଘୋର କ୍ଷତି ସାଧନ କରୁ । ସର୍ବତ୍ର ଅରାଜକତା, ହିଂସା ଓ ଧନଜୀବନର ହାନି ଘଟାଇଥାଉ । ଆତଙ୍କବାଦ ଖେଳିଯାଏ । ଏହା ଫଳରେ ଶାନ୍ତି, ପ୍ରଗତି ଓ ସମୃଦ୍ଧି ବ୍ୟକ୍ତି ତଥା ସମାଜ ଜୀବନରେ ସମ୍ଭବ ହୋଇପାରେ ନାହିଁ । ସମ୍ପୂର୍ଣ୍ଣ ଭାବରେ କର୍ତ୍ତବ୍ୟ ବିମୁଖ ହୋଇ ଅଧିକାର ସର୍ବସ୍ୱ ହେବା ଯାହା, ସ୍ୱାର୍ଥାନ୍ଧ ହେବା ତାହା । ସ୍ୱାର୍ଥାନ୍ଧ ପ୍ରାଣୀ କେବେହେଁ ସାମାଜିକ ହୋଇ ପାରିବେ ନାହିଁ । ପକ୍ଷାନ୍ତରରେ ସମାଜର ପ୍ରାଣୀ କେବେହେଁ ବ୍ୟକ୍ତିଦ୍ୱୀପ ସୃଷ୍ଟି କରିପାରିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତି ଯେ ମାନବ-ସୃଷ୍ଟିର ଅବିଚ୍ଛିନ୍ନ ଅଂଶ ବିଶେଷ, ଏହା ସୃଷ୍ଟିର ଚରମ ଓ ପରମ ସତ୍ୟ । ତେଣୁ ଅଧିକାର ସହିତ ଦାୟିତ୍ୱ ସଂଶ୍ଳିଷ୍ଟ । ମିଳିତ ଜାତିସଂଘର ମାନବିକ ଅଧିକାର ଘୋଷଣାନାମରେ ମହାତ୍ମା ଗାନ୍ଧିଙ୍କ ଉଦାହରଣ ଓ ଉକ୍ତି ସହ ସାବ୍ୟସ୍ତ କରାଯାଇ ଅଛି । ଏହାହିଁ ଭାରତୀୟ ଭାବନା ଓ ଭାରତୀୟତା । ଏହା ମଧ୍ୟ ଯୁଗଯୁଗର ଭାରତୀୟ ଜୀବନସ୍ରୋତ । ଗାଁଗହଳରେ ତଥା ଜନଜୀବନରେ ପାଠପଢ଼ାରୁ ବଞ୍ଚିତ ଏପରି ଜନନୀ ଅଛନ୍ତି ସେମାନଙ୍କ ହୃଦୟରେ ଏହି ସ୍ରୋତ ଚିର ପ୍ରବହମାନ । ଅନାବିଳ ମାତୃସ୍ନେହ ଓ ଭ୍ରାତୃତ୍ୱରେ ଏହା ପ୍ରକାଶ ପାଏ । ପରୀକ୍ଷାକୈନ୍ଦ୍ରିକ ଶିକ୍ଷାପଦ୍ଧତି, ପ୍ରତିଦ୍ୱନ୍ଦ୍ୱିତାମୂଳକ ସମାଜ-ବ୍ୟବସ୍ଥା ଓ କ୍ଷମତାଲୋଭୀ ସର୍ବଗ୍ରାସୀ ରାଜନୈତିକ ଚିନ୍ତାଧାରା ଫଳରେ ଏହି ସ୍ରୋତଟି କ୍ରମେ କ୍ଷୀଣ ଓ ଲୁକ୍କାୟିତ ହୋଇଯାଉଛି । ଏହାର ପରିବର୍ତ୍ତନ କରି ଶିକ୍ଷା, ସମାଜ ଓ ରାଜନୀତିକୁ ଏହି ସ୍ରୋତଦ୍ୱାରା ସୁଜଳା ସୁଫଳା ଶସ୍ୟଶ୍ୟାମଳା କରିବାକୁ ପଡ଼ିବ । ତାହା ହେଲେ ଏହି ବୃହତ୍ତର ପରିପ୍ରେକ୍ଷୀରେ ଦାବି ଓ ଦାୟିତ୍ୱର ପ୍ରଶ୍ନ ପୌରନୀତି (Civics) ପାଠର ଅଳ୍ପ କେତୋଟି ପିରିଅଡ଼ରେ ସରିବାର ବିଷୟ ନହୋଇ ଶିକ୍ଷାର ସମସ୍ତ ବିସ୍ତାର ଓ ଆଗ୍ରହର ଉପଜୀବ୍ୟ ହୋଇ ରହିବ । ଏହାଛଡ଼ା ବ୍ୟକ୍ତିର ଗରିମା ଓ ରାଷ୍ଟ୍ରର ଅଖଣ୍ଡତା ପାଇଁ ଆମ୍ଭେମାନେ ଅଙ୍ଗୀକାରବଦ୍ଧ । ଏହି ଉଭୟର ଯୁଗପତ୍ ପ୍ରକାଶ ଆମ୍ଭମାନଙ୍କର ଜୀବନବ୍ୟାପୀ ଧ୍ୟେୟ ସକଳ ସ୍ତରରେ ହୋଇ ରହିବା ଉଚିତ ।

ଅଧିକାର ପ୍ରତି ଅବାଞ୍ଛିତ ଓ ମାତ୍ରାଧିକ ଅଗ୍ରାଧିକାର ପ୍ରକାଶ କରି ଆମ୍ଭେମାନେ ଅନେକ ପ୍ରକାର ଜାତୀୟ ସମ୍ପତ୍ତିର କ୍ଷୟ କରି ପକାଉ । ଜଙ୍ଗଲ ଉଜୁଡ଼ି ଯାଏ ।

ଶିକ୍ଷାଳୟ ଓ ପୁସ୍ତକାଳୟ ପୋଡ଼ି ପାଉଁଶ ହୁଏ । ପରିବହନ ପଥ ଓ ସାମଗ୍ରୀର ଅପବ୍ୟବହାର କରାଯାଏ । କହିବାର ଅଧିକାରକୁ ଏପରି କାହିର କରାଯାଏ ଯେ ଏହା ଝିମିଟି ଖେଳରୁ ମହାଭାରତ ଯୁଦ୍ଧରେ ପରିଣତ ହୋଇ ଧନ ଜୀବନ ଲୁଣ୍ଠିତ ହୁଏ । ଏ ଦେଶ ଆମର ଓ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏହିସବୁ ଜାତୀୟ ସମ୍ପତ୍ତି ସମସ୍ତଙ୍କର । ଏହାକୁ କାର୍ଯ୍ୟକାରୀ କରିବାକୁ ହେବ । ଏଥିରେ ମତାନ୍ଧତା ଓ ଧର୍ମାନ୍ଧତାର ସ୍ଥାନ ନାହିଁ । ଅଛି ବନ୍ଧୁତା, ସ୍ନେହ ଓ ସମ୍ମାନ । ଏ ସବୁ ମଧ୍ୟ ମାନବିକତା । ଆମେ ଭଲ ମନୁଷ୍ୟ ହୋଇପାରିଲେ, ଉଚ୍ଚ-କୋଟୀର ଭାରତୀୟ ସଙ୍ଗେ ଶିକ୍ଷିତ ହୋଇପାରିବା । ତେଣୁ ମାନବିକତାର ଶିକ୍ଷା ହେଉଛି ସଂସ୍କୃତିର ଶିକ୍ଷା । ଏହା ଜାତୀୟ ସଂହତି ଓ ବିଶ୍ୱ ସଂହତି ।

ଏଠାରେ ଏହା ସ୍ମରଣ କରିବାର କଥା ଯେ ପାଠାନୁଷ୍ଠାନର ପବିତ୍ରତା ପ୍ରତି ସର୍ବଦା ଲକ୍ଷ୍ୟ କରିବାକୁ ପଡ଼ିବ । ବିଧିବିଧାନ ଭିତ୍ତିରେ ସକଳ କଳଙ୍କିତ ଶକ୍ତି ଏଥି ମଧ୍ୟରେ ଅନୁପ୍ରବେଶରୁ କ୍ଷାନ୍ତ ରହିବେ । ତେବେ ଶିକ୍ଷାଳୟ ସର୍ବଦା ଅଧ୍ୟାପନା, ଅଧ୍ୟୟନ, ଅଧ୍ୟବସାୟ ଓ କଠିନ ସାଧନାର ପୀଠ ହୋଇ ରହିବ । ଗାନ୍ଧି ପ୍ରବର୍ତ୍ତିତ ଓ ମୌଳିକ ଶିକ୍ଷାରେ ଅନୁସୃତ ସମୂହ ଜୀବନଯାପନର ଧାରା (Community Living) ସମସ୍ତ ଶିକ୍ଷାଳୟର ଅଙ୍ଗ ହୋଇ ରହିବ । ବିଶେଷ କରି ବିଭିନ୍ନ ଧର୍ମ, ଧର୍ମଗୁରୁ ଓ ଧର୍ମଶାସ୍ତ୍ରର ସାରସତ୍ୟ ବୁଝିବା ପାଇଁ ସର୍ବଧର୍ମ ପ୍ରାର୍ଥନାର ଅଭ୍ୟାସ କରାଯିବ । ସମୟସମୟରେ ଅଭିଭାବକ ଓ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ଯୋଗ ଦେବା ପାଇଁ ଉତ୍ସାହିତ କରାଯିବ । ମୌଳିକ ଶିକ୍ଷାଭିମୁଖୀ କାର୍ଯ୍ୟକ୍ରମର ପ୍ରବର୍ତ୍ତନ ପାଇଁ ୧୯୫୭-୫୮ରୁ ଦୁଇ-ତିନି ବର୍ଷ ଆମ ରାଜ୍ୟରେ ନାନା ପ୍ରକାର ବ୍ୟବସ୍ଥା କରାଯାଇଥିଲା । ତନ୍ମଧ୍ୟରେ ଭ୍ରାମ୍ୟମାଣ ତାଲିମ ଶିବିର (Mobile Training Squad) ଥିଲା ଅନ୍ୟତମ । ବିଭିନ୍ନତା ମଧ୍ୟରେ ଏକାତ୍ମତାର ବିକାଶ ପାଇଁ ଏହା ଏକାନ୍ତ ସହାୟକ ହୋଇଥିଲା । ଅବଶ୍ୟ କେତେକ କ୍ଷେତ୍ରରେ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ନିଜକୁ ପବିତ୍ର କରିବାର ଉଦାହରଣ ଦୃଷ୍ଟିକୁ ଆସିଛି—କିନ୍ତୁ ଏହା ନିନ୍ଦନୀୟ । ଆମ ଶିକ୍ଷାନୁଷ୍ଠାନଗୁଡ଼ିକରେ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟକ୍ରମ ଏଯାଏଁ ମୁଖ୍ୟତଃ ଏକ ନିର୍ଦ୍ଦିଷ୍ଟ ଦିଗଆଡ଼କୁ ଝୁଙ୍କି ରହିଛି । ଅନ୍ୟ ରାଜ୍ୟ, ଭାଷା ଓ ସମ୍ପ୍ରଦାୟର ଶିକ୍ଷାର୍ଥୀ ଆମ ଅନୁଷ୍ଠାନଭୁକ୍ତ ହୋଇଥିଲେ ହେଁ କାର୍ଯ୍ୟକ୍ରମଗୁଡ଼ିକ ସର୍ବଭାରତୀୟ ଚରିତ୍ର ଗ୍ରହଣ କରି ପାରିନାହିଁ । ରେଳ ପ୍ରଭୃତି ପରିବହନର ବ୍ୟବସ୍ଥା, ଦର୍ଶନୀୟ ସ୍ଥାନର ଗୁରୁତ୍ୱ, ବୁଝିବାଜାଣିବାର ସୁଯୋଗ ଆଦି ହେତୁରୁ ଲୋକମାନଙ୍କର ଯାତାୟାତ ଓ ବସତି ସ୍ଥାପନରେ ଗତିଶୀଳତା ପରିଲକ୍ଷିତ ହେଉଅଛି । ଏପରି ସ୍ଥଳରେ ଆମ ଶିକ୍ଷାନୁଷ୍ଠାନଗୁଡ଼ିକ ନିଜ ନିଜ ସ୍ୱରୂପ ରକ୍ଷଣ, ସାଜସଜ୍ଜା, ପାଠ୍ୟକ୍ରମ, ରୂପରେଖ, ପାଠେତର ବ୍ୟବସ୍ଥା ଆଦିରେ ଅଖିଳ ଭାରତୀୟ ଆଭିମୁଖ୍ୟ ଗ୍ରହଣ କରିବା ଉଚିତ ।

ଜାତୀୟ ସ୍ତରରେ ଭାବଗତ ସମନ୍ୱୟ ସମିତି (Emotional Integration Committee) ଜାତୀୟ ସଂହତିର ବିକାଶ ପାଇଁ କେତେକ ଶିକ୍ଷାଗତ ପ୍ରସ୍ତାବ ସୁପାରିସ

କରିଛନ୍ତି । ଜାତି, ଧର୍ମ, ସଂସ୍କୃତି ଓ ରାଜନୀତି ନିର୍ବିଶେଷରେ ଦେଶବାସୀଙ୍କୁ ଏକତାଭୁକ୍ତ କରିବା ପାଇଁ ଏ ସବୁ କାର୍ଯ୍ୟକାରୀ କରିବା ଉଚିତ । ଆହୁରି ମଧ୍ୟ ଜାତୀୟ ସଂହତି ପରିଷଦର ଗଜେନ୍ଦ୍ରଗଡ଼କର ଉପସମିତି (୧୯୬୮) ସୁପାରିସ କରିଛନ୍ତି, ପ୍ରାକ୍-ପ୍ରାଥମିକ ବିଦ୍ୟାଳୟ ସ୍ତରଠାରୁ ଉପାଧ୍ୟୁତ୍ତର ଶ୍ରେଣୀ ସ୍ତର ପର୍ଯ୍ୟନ୍ତ ସମସ୍ତ ସ୍ତରରେ ଶିକ୍ଷା ଏପରି ପୁନଃ ପ୍ରତିଷ୍ଠିତ ହେବ ଯଦ୍ଦ୍ୱାରା ଏହା (କ) ସଂହତି, ଐକ୍ୟ ଓ ଭାରତୀୟ ଭାବ ସୃଷ୍ଟି କରିବାରେ ସାହାଯ୍ୟ କରିପାରିବ, (ଖ) ଗଣତନ୍ତ୍ରର ନୀତିଗୁଡ଼ିକରେ ଆସ୍ଥା ସ୍ଥାପନ କରିବ ଓ (ଗ) ଆଧୁନିକ ସମାଜ ସୃଷ୍ଟି କରିବାରେ ସାହାଯ୍ୟ କରିବ । ଶିକ୍ଷାର ସ୍ତର ଓ ଶିକ୍ଷାର୍ଥୀମାନଙ୍କ ମାନସିକ ବିକାଶ ଅନୁସାରେ ଏହାର ପୁନଃ ବିନ୍ୟାସ କରିବାରେ ଗୁରୁତର ପାର୍ଥକ୍ୟ ରହିବ । କିନ୍ତୁ ଜାତୀୟ ସଂହତି ଦୃଷ୍ଟିରୁ ଏହି ପୁନଃବିନ୍ୟାସ ଏକାନ୍ତ ଆବଶ୍ୟକ ।

ଅଜ୍ଞାନ ଅନ୍ଧକାର ଦୂର କରି ଶିକ୍ଷା ଜ୍ଞାନାଲୋକ ବିସ୍ତାର କରେ । ସେଥିପାଇଁ କୁହାଯାଏ, "...ଜ୍ଞାନାଞ୍ଜନଶଳାକୟା, ଚକ୍ଷୁରୁନ୍ମୀଳିତଂ ଯେନ" ସେ ଗୁରୁ । ବସ୍ତୁତଃ ନିଜ ବିଷୟରେ ତଥା ନିଜ ସମ୍ପର୍କରେ ସଚରାଚର ସଂସାର ସମ୍ବନ୍ଧରେ ଜ୍ଞାନ ଫିଟାଇ ଦିଏ । ବିଦ୍ୟା ଓ ଆତ୍ମସାକ୍ଷାତ୍କାରର ସାଧନା ଜାତ ହୁଏ । ଏପରି ବିଦ୍ୟାଦ୍ୱାରା ନିଜ-ପର ମଧ୍ୟରେ ପ୍ରାଚୀର ରହେ ନାହିଁ । "ଜୟ ଜଗତ୍, ଜୟ ଭାରତ"ର ସାଧନା କରିବାକୁ ପଡ଼େ । ଏହି ଆତ୍ମବିଦ୍ୟା ସହିତ ବିଜ୍ଞାନ, ଗଣିତ, ଭୂଗୋଳ, ଭାଷା, ସାହିତ୍ୟ ପ୍ରଭୃତି ଶିକ୍ଷା ଦିଆଗଲେ ମଧ୍ୟ ସମଦୃଷ୍ଟି ଓ ସମଜ୍ଞାନ ଜାତ ହୁଏ । "ସମତ୍ୱଂ ଯୋଗ ଉଚ୍ୟତେ" । ଏପରି ଯୋଗାରୂଢ଼ ବ୍ୟକ୍ତି ପକ୍ଷରେ ସଂହତି ସହଜସାଧ୍ୟ ହୋଇଯାଏ ।

ବସ୍ତୁତଃ ଶିକ୍ଷା ହିଁ ଏକ ମାନବିକ ପ୍ରକ୍ରିୟା ଓ ଏହା ମାନବକୈନ୍ଦ୍ରିକ ହୋଇଥିବାରୁ ମାନବିକତାର ବିକାଶ ହେଉଛି ଏହାର ଧ୍ୟେୟ । ତେଣୁ ମାନବ ହୃଦୟରେ ସଂହତିର ସଞ୍ଚାର ପାଇଁ ଏହା ଏକ ସମର୍ଥ ଆୟୁଧ । ବିଶ୍ୱର ବିଭିନ୍ନ ସଂପ୍ରଦାୟ ପାଇଁ ଉପାସନା ମନ୍ଦିର ରହିଛି । ଏହା ସଂପୃକ୍ତ ଉପାସକଙ୍କ ପାଇଁ ଉନ୍ମୁକ୍ତ । ଅନେକେ କହନ୍ତି, ଈଶ୍ୱର ଉପାସନା ପରିବର୍ତ୍ତେ ସେହିସବୁ ମନ୍ଦିର ପ୍ରତିମା ପୂଜାର ପୀଠ ରୂପେ ପୂଜ୍ୟ । କିନ୍ତୁ ଶିକ୍ଷାଳୟ ହେଉଛି ଏପରି ଏକ ବିଦ୍ୟା-ମନ୍ଦିର ଯାହାକି ସମଗ୍ର ବିଶ୍ୱର ସବୁ ସଂପ୍ରଦାୟ ଲୋକଙ୍କ ପାଇଁ ଉନ୍ମୁକ୍ତ ଓ ସେଠି ପ୍ରତିଭା ତଥା ଆତ୍ମଶକ୍ତିର ବିକାଶ ଘଟେ । ସଂପ୍ରଦାୟ ନିର୍ବିଶେଷରେ ଏଥିରେ ସମସ୍ତଙ୍କର ଅବାଧ ପ୍ରବେଶାଧିକାର ରହିଛି । ଏହା ବ୍ୟତୀତ ସଂହତିର ବୀଜ ସମସ୍ତଙ୍କ ହୃଦୟରେ ବୁଣିଯାଇ ପାରେ । ସଂହତିର ବିକାଶ ମାନବ ହୃଦୟରେ ଜନ୍ମେ । ତେଣୁ ଶିକ୍ଷା ହେଉଛି ସଂହତିର ବିକାଶ ପାଇଁ ଅତି ପ୍ରଶସ୍ତ ଓ ଅମୋଘ ଆୟୁଧ । କିନ୍ତୁ ଆମ ଦେଶରେ ଶିକ୍ଷାର ବିକାଶ ଆଶାନୁରୂପ ଭାବରେ ହୋଇପାରି-ନାହିଁ । ସକଳ ଶିକ୍ଷାଳୟରେ ସମସ୍ତେ ଓ ସମସ୍ତଙ୍କ ଆଳୟରେ ଶିକ୍ଷା ପ୍ରବେଶ ଲାଭ କରିପାରି ନାହିଁ । ଶିକ୍ଷାର ଗୁଣାତ୍ମକ ବିକାଶ ଆଶାନୁରୂପ ଘଟିନାହିଁ । ଅନେକ ଲୋକ

ଏଯାଏଁ ଶିକ୍ଷା ସୁଯୋଗରୁ ବଞ୍ଚିତ । ଶିକ୍ଷା ପ୍ରତ୍ୟେକ ନାଗରିକଙ୍କ ପାଇଁ ଜୀବନବ୍ୟାପୀ ହୋଇପାରି ନାହିଁ କିମ୍ବା ପ୍ରତ୍ୟେକଙ୍କ ପାଇଁ ସର୍ବୋତ୍ତମ ଶିକ୍ଷାର ବ୍ୟବସ୍ଥା କରାଯାଇ ପାରିନାହିଁ । ଆବଶ୍ୟକତା ତୁଳନାରେ ବ୍ୟୟବରାଦ ମଧ୍ୟ ଆଶାନୁରୂପ ନୁହେଁ । ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ସାମାଜିକ ଦାୟିତ୍ୱବୋଧର ବିକାଶ ପାଇଁ ଆମ ପ୍ରଚେଷ୍ଟା ପ୍ରବଳ ରୂପ ଧାରଣ କରୁନାହିଁ । ଶିକ୍ଷାର ଗୁଣ ଓ ମାନ ବିଷୟରେ ସାମାଜିକ ସଚେତନତା ଯେତେ ହେବାର କଥା, ତାହା ହୋଇପାରିନାହିଁ । ସେହି ଅନୁପାତରେ ଏହି ସାଧନର ପରିସର ଓ ପର୍ଯ୍ୟାପ୍ତତା ସୀମିତ ହୋଇଯାଏ । ଅବଶ୍ୟ ମାନବିକତା ଓ ସଂସ୍କୃତି ପ୍ରତି ଧ୍ୟାନ ରଖିଲେ କେତେକାଂଶରେ ଗୁଣାତ୍ମକ ବିକାଶ ଦିଗରେ କାର୍ଯ୍ୟ କରାଯାଇପାରେ ।

---

# ବିଜୟ ସେଇଠି, ଯେଉଁଠି କାହାରି ପରାଜୟ ନାହିଁ

୧୯୧୯ ମସିହାର କଥା । ପ୍ରଥମ ମହାସମର ସରିଛି । ଧନଜୀବନର ଅସୁମାରି ହାନି । ରକ୍ତରଞ୍ଜିତ ରଣକ୍ଷେତ୍ରର ଶୋଣିତ ସ୍ରୋତ ଶୁଷ୍କ ହୋଇନାହିଁ । ବ୍ୟଥିତ, ବିକଳାଙ୍ଗ ଓ ନିଃସ୍ୱ ବ୍ୟକ୍ତିର ହାହାକାର ଶୁଭୁଛି । ପୀଡ଼ା, ଉତ୍ପୀଡ଼ନ ଓ ପରପୀଡ଼ନର ପଦଧ୍ୱନି ହୃଦୟରେ ବିଭୀଷିକା ସୃଷ୍ଟି କରୁଛି । ପୁନଶ୍ଚ ଯଦି ଯୁଦ୍ଧ ହୁଏ ତେବେ ଧ୍ୱଂସର ତାଣ୍ଡବଲୀଳା ସର୍ବଗ୍ରାସୀ ହୋଇଯିବ । ତେବେ ବିଶ୍ୱଶାନ୍ତି କାହିଁ ? ଶୋଷଣ, କଷଣ, ଅନ୍ୟାୟ, ଅତ୍ୟାଚାର, ଅବିଚାର, ବିଦ୍ୱେଷ ଆଦି ଅମାନୁଷିକତାରେ ଜର୍ଜରିତ ବିଶ୍ୱକୁ କିପରି ବଞ୍ଚାଇବାକୁ ହେବ ? ଏହାର ଉତ୍ତରରେ ତତ୍କାଳୀନ ରାଷ୍ଟ୍ରନାୟକମାନଙ୍କ ଚିନ୍ତା ପ୍ରସୂତ ଲିଗ୍ ଅଫ୍ ନେସନ୍ସ (League of Nations) ସେତେବେଳେ ଭେଳିକି ସୃଷ୍ଟି କରିଛି । ଭଲକଥା, କିନ୍ତୁ ଶାନ୍ତିଚୁକ୍ତି ସ୍ୱାକ୍ଷର କରି ଶାନ୍ତି ପ୍ରତିଷ୍ଠା କରାଯାଇ ପାରିବ କି ? ଯୁଦ୍ଧଖୋର ମନୋଭାବକୁ ସନ୍ଧିଦ୍ୱାରା ଦୂର କରି ହେବ କି ? ପରାଜୟର ପ୍ରତିହିଂସା ପାଉଁଶର ଅନ୍ତରାଳରେ ଦପ୍ ଦପ୍ କୁହୁଳି ଉଠୁଛି । ପକ୍ଷାନ୍ତରରେ ବିଜୟର ଅପରାଜେୟ ପୌରୁଷ ଦୁର୍ବାର ଅଗ୍ନିଶିଖା ସଦୃଶ ବିଶ୍ୱବ୍ୟାପୀ ହେବାକୁ ସୁଯୋଗ ଉଣ୍ଡୁଛି । ଅଭାବ, ଅନଟନ, ଅସମତା ଓ ଅସ୍ଥିରତା ଲାଗିରହିଛି । ଏହା ଫଳରେ ଲିଗ୍ ଅଫ୍ ନେସନ୍ସ ବିଫଳ ହୋଇଛି । ସନ୍ଧିରେ ଆବଦ୍ଧ ଶାନ୍ତି ମାତ୍ର ଅସ୍ଥାୟୀ ଓ କ୍ଷଣିକ । କେବଳ କୋଡ଼ିଏ ବର୍ଷ ମଧ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଯାଇଛି । ୧୯୧୯ ମସିହାର ଆଶା ବିଡ଼ମ୍ବନାରେ ପରିଣତ ହୋଇଛି । ପୁଣି ଅକଳନ କ୍ଷୟକ୍ଷତିର ପୁନରାବୃତ୍ତି ଘଟିଛି । ନାହିଁ ନଥିବା ବୀଭତ୍ସତା ଓ ବିଭୀଷିକା । ଦ୍ୱିତୀୟ ମହାସମରର ଅବସାନ ପରେ ପୁଣି ଆଜି ଶାନ୍ତିର ଚିନ୍ତା । ଯଦି ଯୁଦ୍ଧର ଅଙ୍କୁରୋଦ୍‌ଗମ ମନୁଷ୍ୟ ମନରେ ହୁଏ, ତେବେ ଶାନ୍ତିର ବୀଜ ମନୁଷ୍ୟର ହୃଦୟରେ ବପନ କରାନଯିବ କାହିଁକି ? ନିଶ୍ଚିତ ଭାବରେ ଶାନ୍ତିର ସୁରକ୍ଷା ମନୁଷ୍ୟ ମନରେ ଠିଆକରାଇବାକୁ ପଡ଼ିବ । ଆଶଙ୍କା, ଭୟ ଓ ବିପଦ ମନରେ ରହିବ ନାହିଁ । ସମତା, ସମୃଦ୍ଧି, ସହଯୋଗ ଓ ସଦ୍‌ଭାବନା ବିରାଜିବ । ଏପରି ସ୍ଥଳରେ ବିଜୟ ଜଣେ ଲୋକର, ଗୋଟିଏ ଦେଶର ବା ଏକ ପ୍ରକାର ଚିନ୍ତାରାଜ୍ୟର ଏକଚାଟିଆ ଉପଭୋଗର ସାମଗ୍ରୀ ହୋଇ ରହିବନାହିଁ । ବିଜୟର ଉତ୍‌ଫୁଲ୍ଲତା, ସହାବସ୍ଥାନର ଅନୁପ୍ରେରଣା ଓ ଦେଶଗଠନର ସକ୍ରିୟତା ସମସ୍ତଙ୍କ ପ୍ରାଣରେ ସୃଷ୍ଟି କରିବ ଉନ୍ମାଦନା । ଏହାହିଁ ବିଜୟ- ସମସ୍ତଙ୍କର ସର୍ବୋତ୍ତମ ବିଜୟ । ଏଠି କାହାରି ପରାଜୟ ନାହିଁ କିମ୍ବା ପରାଜିତର ଅନ୍ତର୍ଦାହ ଆକ୍ରୋଶ ନାହିଁ । ଏଠି "ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ।" ଏହି 'ସର୍ବ'ଟି

ସମସ୍ତ ବିଶ୍ୱର, ସକଳ ପ୍ରାଣୀଙ୍କର । ଦ୍ୱିତୀୟ ବିଶ୍ୱଯୁଦ୍ଧର ପାରମାଣବିକ ପରିଣତି ପରେ ଯୁଦ୍ଧର ଅବସାନ ଘଟିଛି ଓ ଜନ୍ମ ନେଇଛି ମିଳିତ ଜାତିସଂଘ । ଶାନ୍ତି, ମୈତ୍ରୀ, ଓ ପ୍ରୀତିର ସେଇ ପ୍ରତିଶ୍ରୁତି ଏବେ ବି ରହିଛି । ଏଥିରେ ସୂଚିତ ହେଉଛି ସବୁଠି ଶାନ୍ତି ଓ ସମସ୍ତଙ୍କ ହୃଦୟର ଶାନ୍ତି । ଶାନ୍ତିର ଅଙ୍କୁରୋଦ୍‌ଗମ ମନୁଷ୍ୟ ହୃଦୟରେ ହେବ । ସେଥିପାଇଁ ବିଭିନ୍ନ ସଙ୍ଘ, ସଙ୍ଗଠନ ଓ ସଂସ୍ଥା । ତତ୍ତ୍ୱ, ମନ୍ତ୍ର, ମନ ଓ ମତ ସବୁର ଆସ୍ଥାରେ ଅଦ୍ଭୁତ ମିଳନ । ବହୁ ସାଫଲ୍ୟ ଓ ଆଶା ଭରସାର ବିଶ୍ୱ ସଙ୍ଗଠନ ହୋଇ ରହିଥିବା ସତ୍ତ୍ୱେ ମିଳିତ ଜାତି ସଂଘ ନିଜକୁ କେତେଦୂର ସମସ୍ତ ସଂକୀର୍ଣ୍ଣତାରୁ ମୁକ୍ତ କରି ଏହାର ପ୍ରତିଜ୍ଞା ପାଳନ କରିପାରିବ, ତାହା ଦେଖିବାର କଥା । କାରଣ ଏକ ସର୍ବଗ୍ରାସୀ ପ୍ରଳୟଙ୍କରୀ ଯୁଦ୍ଧର ଆଶଙ୍କା ଓ ଏହାର କରାଳ ଓ କ୍ରୁର ଛାୟା ଆଜି ବ୍ୟକ୍ତିବିଶେଷ ଓ ରାଷ୍ଟ୍ରନାୟକମାନଙ୍କ ଚିନ୍ତାରେ ପ୍ରତିଫଳିତ ହେଉଛି ।

କିନ୍ତୁ ଏକଥା ସତ୍ୟ ଯେ, ବିଜୟ ସେଇଟି, ଯେଉଁଟି କାହାର ପରାଜୟ ନାହିଁ । ଏହାହିଁ ଭଗବାନ ବୁଦ୍ଧଙ୍କର ବାଣୀ : Victory is one which is defeat for none. ଦାରିଦ୍ର୍ୟ, ଅଜ୍ଞତା, ଅଶିକ୍ଷା, ରୋଗ ଓ କୁସଂସ୍କାର ଥିବା ଯାଏଁ ଏହା ହେବ କି ? ବିଜୟର ଶାନ୍ତି ସମସ୍ତଙ୍କ ପ୍ରାଣରେ ଗୁଞ୍ଜରିତ ହେବ । ସମସ୍ତଙ୍କ ବିଜୟରେ କାହାର ପରାଜୟ ନାହିଁ । ସମସ୍ତଙ୍କଦ୍ୱାରା, ସଭିଙ୍କ ପାଇଁ ଓ ସମସ୍ତଙ୍କ ବିଜୟ ହିଁ ପ୍ରକୃତ ବିଜୟ । ଏହାର ସ୍ୱୀକୃତି ମହାତ୍ମା ଗାନ୍ଧିଙ୍କ ସ୍ୱାଧୀନତା ଆନ୍ଦୋଳନର ଭିତ୍ତିଭୂମି । ପଞ୍ଚଶୀଳ ନୀତିରେ ଏହି ଘୋଷଣାର ଉଦ୍‌ଘୋଷକ ପଣ୍ଡିତ ନେହରୁ । ଏବର ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ପ୍ରବକ୍ତା ଓ ଉଦ୍ୟୋକ୍ତାମାନେ ସେହି ବିଜୟର ଧ୍ୱଜାଧାରୀ । ବହୁ ଯୁଗପୁରୁଷ ଦେଶବିଦେଶରେ ଏହି ବିଜୟ ପାଇଁ ପ୍ରାଣପାତ କରିଯାଇଛନ୍ତି । ସତ୍ୟର ଜୟହିଁ ପରମ ସତ୍ୟ ।

ବିଶ୍ୱପରିପ୍ରେକ୍ଷୀରେ ଏହା ଯେପରି ସତ୍ୟ, ବ୍ୟକ୍ତି ତଥା ସମାଜର ବିଭିନ୍ନ ବିଭାବରେ ଏହା ସେହିପରି ସତ୍ୟ । ଶିକ୍ଷାଜଗତରେ ଏହାର ବିଚାର ସର୍ବାଦୌ ବାଞ୍ଛନୀୟ, କାରଣ ସମଗ୍ର ବିଶ୍ୱରେ ସାମରିକ ପ୍ରସ୍ତୁତିରେ ଯାହା ବ୍ୟୟ କରାଯାଏ, ତାହା ପଛକୁ ଶିକ୍ଷା ବାବଦରେ ଖର୍ଚ୍ଚ । ସେତିକି ନୁହେଁ, ବ୍ୟକ୍ତି ତଥା ସମାଜର ସୁରକ୍ଷା କରି ଏହାର ଶ୍ରୀବୃଦ୍ଧି ସାଧନ କରିବାର ସର୍ବସ୍ୱୀକୃତ ସାଧନ ହେଉଛି ଶିକ୍ଷା । ବିଭିନ୍ନ ରାଷ୍ଟ୍ରର ଏହା ହେଉଛି ଅନ୍ୟତମ ସର୍ବନିମ୍ନ ଜନମଙ୍ଗଳ କାର୍ଯ୍ୟକ୍ରମ । ସାରା ବିଶ୍ୱରେ ଏହା ଏକପ୍ରକାର ସର୍ବବୃହତ୍ ପୁଞ୍ଜି ଲଗାଣ ଯୋଜନା—ମାନବିକ ସମ୍ବଳର ବିକାଶ ପାଇଁ । ଏଥିରେ କିନ୍ତୁ ସେଇ କଥା, ପରାଜୟର ପ୍ରାଦୁର୍ଭାବ ସୁପରିଲକ୍ଷିତ । ବିଶ୍ୱବିଦ୍ୟାଳୟ, ବୋର୍ଡ଼ ଆଦି ସାଧାରଣ ସଙ୍ଗଠନ ଦ୍ୱାରା ଶିକ୍ଷା-କାର୍ଯ୍ୟକ୍ରମର ଯେଉଁ କେତୋଟି ମୂଲ୍ୟାୟନ ବା ପରୀକ୍ଷାର ପରିଚାଳନା କରାଯାଏ, ସେଥିରେ ସାଧାରଣତଃ ବା ଅଧିକାଂଶ ସ୍ଥଳରେ ପାସ୍ କରିବା ପିଲାଙ୍କ ସଂଖ୍ୟା ଅପେକ୍ଷା ଫେଲ୍ ହେବା ପିଲାଙ୍କ ସଂଖ୍ୟା ବେଶୀ କହିଲେ ଚଳେ । ବେଳେବେଳେ ମନେହୁଏ, ଆମ ଶିକ୍ଷା-ପଦ୍ଧତିର ମୁଖ୍ୟ ଲକ୍ଷ୍ୟ କିଅଣ ପିଲାଙ୍କୁ ଫେଲ୍ କରାଇବା ହୋଇଛି କି ? ଯୁକ୍ତି କେବେହେଁ

କରାଯାଉ ନାହିଁ ଯେ ଯେଉଁ ପିଲା ନାମ ଲେଖାଇବେ, ସେମାନେ ପାସ ନିଶ୍ଚିତ କରିବେ । ଏଥିପାଇଁ ଧ୍ୟାନ, ଧାରଣା ଓ ଅଧ୍ୟବସାୟ ରହିବ । ଏଠି ପୂରା ମାତ୍ରାରେ ନିଷ୍ଠା, ନିୟମ ଓ ନିୟନ୍ତ୍ରଣ ରହିବ । ସମସ୍ତ ସହଯୋଗ ମିଳିବ । ଆମ ପରୀକ୍ଷା ପ୍ରଣାଳୀ, ପାଠ୍ୟପୁସ୍ତକ, ପ୍ରଶାସନାଦିରେ ଏହା କେତେ ଦୂର ପ୍ରତିଫଳିତ ? ପ୍ରତି ଦିନର କାର୍ଯ୍ୟରେ ଏହି ଧ୍ୟେୟ ରୂପାୟିତ କି ?

ଆଚ୍ଛା, ବର୍ତ୍ତମାନ ଦେଖିବା, ଏସବୁ ଫେଲ୍ ପିଲା କିଏ ? ଅଧିକାଂଶ ହେଉଛନ୍ତି ସମାଜର ତଳଶ୍ରେଣୀର ପିଲା—ଯେଉଁମାନଙ୍କ ପିତାମାତା ନିଜେ ପଢ଼ିନାହାନ୍ତି, ପଢ଼ାଇବା ପାଇଁ ପଇସା ପାଆନ୍ତି ନାହିଁ, ଲୁଗାପଟା ଦେଇପାରନ୍ତି ନାହିଁ, ପରୀକ୍ଷାରେ ଧରାଧରି କରିପାରନ୍ତି ନାହିଁ, କାରଣ ଏମାନଙ୍କ ପାଖି ଫିଟେ ନାହିଁ । ଜଣେ କିଏ କହୁଥିଲେ, ଘରେ ମକଦ୍ଦମାଟି ପୂରାଇ ଦେଇ ଦେବାଳିଆ କରିଦେବା ଯାହା, ଗରିବ ଲୋକଟିର ପିଲାଟିକୁ ଉଚ୍ଚ-ଶିକ୍ଷାରେ ପୂରାଇ ଦେବା ତାହା । ସବୁ କିଛି ସରିଯାଏ, ପିଲାଟି ପରୀକ୍ଷାରେ ପାସ୍ କରିପାରେ ନାହିଁ, ଗୁଙ୍କରିବାକରି ଖଣ୍ଡେ ପାଏ ନାହିଁ । ଯଦିବା କଷ୍ଟେମଷ୍ଟେ ୩ୟ ଶ୍ରେଣୀରେ ଖଣ୍ଡେ ପାସ୍ ସାର୍ଟିଫିକେଟ୍ ହାସଲ କରେ, ତାହା ବି କୌଣସି କାମକୁ ଲାଗେ ନାହିଁ, ସେ ଘରେ ବସି ବାପାର ଭିଟା ମାଟିକୁ ଉଜାଡ଼ି ଦିଏ । ପାଠ ତ ହେଲା ନାହିଁ, ଏହା ତାଙ୍କୁ ସାମାଜିକ ଜୀବନ ଧୂଳିସାତ୍ କରେ ।

ଏହା ତ ଗଲା ଫେଲ୍ ପିଲାଙ୍କ କଥା—ପାସ୍ କରନ୍ତି କେଉଁମାନେ ? ଅଧିକାଂଶ ସ୍ଥଳରେ ଥିଲାବାଲାଙ୍କ ପିଲା—ଯେଉଁମାନେ ଘରେ ଟିଉସନ ମାଷ୍ଟ୍ର ରଖିପାରନ୍ତି, ନାନା ପ୍ରକାର ପ୍ରଶ୍ନୋତ୍ତର ବହି ଆଣି ଦେଇ ପାରନ୍ତି, ପଇସା କଉଡ଼ି ଲଗାଇ ପାରନ୍ତି, ଦରକାର ପଡ଼ିଲେ ନିଜ ପାଠ ଓ ପଦବୀ ବଳରେ ପରୀକ୍ଷାରେ ପାଇଥିବା ୧୯ ନମ୍ବରକୁ ୯୧ ନମ୍ବର କରିପାରନ୍ତି, ଇତ୍ୟାଦି । ଅଥଚ ସେହି ଗରିବଙ୍କ ପିଲେ ଉପର ଶ୍ରେଣୀକୁ ଉଠିପାରନ୍ତି ନାହିଁ—ପାଠତ୍ୟାଗୀ ହୁଅନ୍ତି । ନଡ଼ିଆ ଗଛରେ ଓ ବୁଦା ମୂଳରେ ଲୁଚନ୍ତି । ଶିକ୍ଷକଙ୍କୁ ଦେଖିଲେ ବା ନାମ ଶୁଣିଲେ ଡରରେ ଲୁଗାପଟା ଖରାପ କରିପକାନ୍ତି । ଏମାନଙ୍କ କଥା ବୁଝେ କିଏ ? ଏମାନଙ୍କ ହିସାବ କେହି ରଖେ କି ? ଆମ ଶିକ୍ଷା ଏଯାଏଁ ବହୁଭାବରେ ଧୋବଧାଉଳିଆଙ୍କ ପାଇଁ । ଲୋକଦେଖାଣିଆ ପାଇଁ ଆମ ଶିକ୍ଷା ସବୁ ଶ୍ରେଣୀର ଲୋକଙ୍କ ପାଇଁ, ମାଣନେବେ ମହାପାପେ ପରି ଗରିବମାନେ ଜଳକା ହୋଇ ଗୁହିଁ ରହନ୍ତି । ଶିକ୍ଷା ଏମାନଙ୍କର ଚାଲ୍‌କା ଲଡ଼ୁ ନୁହେଁ, ଦିଲ୍ଲୀକା ଲଡ଼ୁ । ଯୋ ଖାତା ହେ, ସୋ ପସ୍ତାହେ, ଅଉର ଭି ଯୋ ନେହିଁ ଖାତା ହେ, ସୋଭି ପସ୍ତାହେ । ସେହି ସବୁ କାରଣରୁ ଆମ ସମ୍ବିଧାନର ଶପଥ ଆଜିଯାଏ କେବଳ ବଚନରେ, କାର୍ଯ୍ୟରେ ନୁହେଁ, ପାଳନ କରାଯାଉଛି ।

ଏହି ପରାଜୟର ପରିଣତି ଯେ କେତେ ଦୂରକୁ ଚେର ମାଡ଼ିଦିଏ ଏହା କଳନା କରିହେବ ନାହିଁ । ଏଥିପାଇଁ ଅଧ୍ୟୟନ ଆବଶ୍ୟକ । ଏହି ପରାଜିତ ପିଲାଟି କେବଳ ବିଦ୍ୟାଳୟର କଳଙ୍କ ନୁହେଁ, ସମାଜର କଳଙ୍କ । ସମାଜ ସବୁ କଥାରେ ତାକୁ ପ୍ରତ୍ୟାଖ୍ୟାନ

କରେ । ଏପ୍ରକାର ଗ୍ରୁପଙ୍କର ସାମାଜିକ ଅଭ୍ୟୁତ୍ଥାନ ସମ୍ଭବ ହୋଇପାରେ ନାହିଁ, ସେଥିପାଇଁ ଜଣେ ବିଦ୍ରୋହୀ ଅରେ ଧ୍ୱନି ଦେବାର ଶୁଣାଯାଏ—ସବୁ କେନ୍ଦ୍ର କରଇ ଫେଲ୍, ଚଳିବ ନାହିଁ ବସ୍ ରେଳ । ହସ ମାଡ୍ରୁଛି, କିନ୍ତୁ ହସିବାର ନୁହେଁ, ପ୍ରତିରୋଧର ପ୍ରତିଧ୍ୱନି । ପ୍ରତିହିଂସାର ପରିପ୍ରକାଶ । କାହାର ମୁଣ୍ଡରେ ବିଫଳତାର କାଳିମା ବୋଳିଦେବା ଠିକ୍ ନୁହେଁ । ଯେଉଁ ପିଲା ଆମ ଦୃଷ୍ଟିରେ ବିଫଳ, ତାଙ୍କ ପାଇଁ ଅନ୍ୟ ଦୃଷ୍ଟିକୋଣ ନାହିଁ କି ? ତାଙ୍କର ଶକ୍ତି, ସାମର୍ଥ୍ୟ ଓ ସାମାଜିକ ଉପଯୋଗିତା ନାହିଁକି ? ଏମାନଙ୍କ କଥା ଛାଡ଼ନ୍ତୁ । ଯେଉଁମାନେ ମୁଣ୍ଡାମୁଣ୍ଡି ପାସ କରିଛନ୍ତି ବା ସଫଳତାର ବୈଜୟନ୍ତୀ ଉଡ଼ାଇଛନ୍ତି ସେମାନଙ୍କ ଦ୍ୱାରା ଦେଶର ସବୁ ଆବଶ୍ୟକତା ମେଣ୍ଟି ପାରିବ କି ? ଆମ ଶିକ୍ଷାରେ ମୂଳରୁ ଭୁଲ ଯାଏଁ ଏ ପ୍ରସଙ୍ଗରେ ଚିନ୍ତା କରୁଛୁ କି ?

ପରାଜୟର ପରାଭବ ପିଲାଙ୍କୁ ତ କଳଙ୍କିତ କରିଦିଏ । ବାପା ମା' ବି ଏଥିରୁ ବାଦ୍ ପଡ଼ନ୍ତି ନାହିଁ । କମିଟିଏ ବସିଲା ଗଳ୍ପ । ବାସନ କୁଟନ ବନ୍ଦ ପଡ଼ିଲା । ଆଶାଭରସା ଚୂନା ହେଲା । ଶେଷରେ କପାଳରେ କର ମାରିବା ହିଁ ସାର ହେଲା । ସେ ଗରିବଟି ଅଧିକ ଗରିବ ହେଲା । ଏମିତି ଅପଦାର୍ଥ ପିଲାଟି ପାଇ ଜୀବନସାରା ହାଇହାଇରେ କାଳ କଟିଲା ।

ଆହୁରି ମଧ୍ୟ ଯେଉଁମାନେ ଶତକଡ଼ା ୩୦ ନମ୍ବର ପାଇଲେ ସେମାନଙ୍କର ପାସ । ୨୯ ନମ୍ବରିଆ ପିଲା ବି ବିଶ୍ୱବିଧାନ ଚାହିଁ ଟଣାଓଟରାରେ ପାସ କରି ଯାଇପାରନ୍ତି । ଏଥିରୁ କମ୍ ନମ୍ବର ପାଇଥିବା ପିଲା ଫେଲ୍ ହୋଇ ରହିଲେ । ଶ୍ରେଣୀଉଠା ପରୀକ୍ଷାଠାରୁ ଆରମ୍ଭ କରି ସବୁ ପରୀକ୍ଷାରେ ଏମିତିକା ଗୋଟେ ବିଧାନ ଅଛି । ଅଚ୍ଛା, ୩୦ ବାଲା ବିଜୟଶ୍ରୀ ଓ ସେଥିରୁ କମ୍ ହେଲେ ହତଶ୍ରୀ । ଗୋଟିଏ ନମ୍ବର ପାଇଁ ଆକାଶପାତାଳ ପ୍ରଭେଦ । କାହା ପାଇଁ ଖିରଖେଚଡ଼ି, ଆଉ କାହା ପାଇଁ ଖାଡ଼ା ଉପବାସ । କେତେ ହତାଶ, ଅବସାଦ ଓ ପଙ୍କୁପଣିଆ । ବେଳେବେଳେ ପିତାମାତାଙ୍କ ତାଡ଼ନାରେ ଗୃହତ୍ୟାଗ ଓ କାହା କାହା ପାଇଁ ଆତ୍ମହତ୍ୟା । ପରୀକ୍ଷାରେ ଫେଲ୍ ହୋଇଥିବା ପିଲା ପାସ କରିଥିବା କେତେକ ପିଲାଙ୍କଠାରୁ ମଧ୍ୟ ଭଲ ହୋଇପାରନ୍ତି । ଜୀବନର ଅନେକ କ୍ଷେତ୍ର, ଭୂମିକା ତଥା ଆବଶ୍ୟକତା ରହିଛି । ଏଥିପାଇଁ ଆମର ଦୃଷ୍ଟି ନାହିଁ । ପରୀକ୍ଷା ପଦ୍ଧତିରେ ମଧ୍ୟ ପରିବର୍ତ୍ତନ କରାଯାଇନାହିଁ । କିନ୍ତୁ ଫେଲ୍ ବା ପାସ ମନମୁଖୀ କହିଦେଇ ସେମାନଙ୍କୁ ଦାଗ ଦେଇଦେଉଛୁ ।

ଏମିତି ବି ଆମ ପାଠପଢ଼ା । ଶିକ୍ଷାର ସବୁ ସ୍ତରରେ ଖାଲି ହାତ ଯୋଡ଼ି କାନ ଡେରି ଶୁଣିବା । ଏହାହିଁ ସୁବୋଧ ଗ୍ରାହର ଲକ୍ଷଣ । ଉତ୍ସାହ ଓ ଉଦ୍ଦୀପନା କାହିଁ ? ମନ ଖୋଲି ହସ, ପେଟପୂରା ପରିପୂର୍ତ୍ତି ( fulfilment), ପାହାଡ଼ ପରି ଆତ୍ମବଳ କାହିଁ ? ଯେ କହିଲା ଓ ପଚାରିଲା ସେ ଭଲ ପିଲା ହେଲାକି ? ଶ୍ରେଣୀର ଗଣା ପିଲାଙ୍କ ଭିତରୁ ଜଣେ ହୋଇ ସୁଦ୍ଧା ଅଳ୍ପ କେତୋଟି ବଡ଼ବଡ଼ିଆ ପିଲାଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଅଗଣା, ଅପୂଚ୍ଛା, ଅଜଣା ଓ ଅଶୁଣା । ଏମାନେ ଖାଲି ଶ୍ରେଣୀର ଶୋଭାର ଭଣ୍ଡାର । ଏମାନଙ୍କର ବିଜୟର ବାସନା ମଉଳିଯାଏ । ପରାଜୟ ରାଜୁତି କରେ ।

ଆଉ ଗୋଟେ ଦୃଷ୍ଟାନ୍ତ ନେବା । ସବୁ ଶିକ୍ଷାନୁଷ୍ଠାନରେ ନୂତନ ପ୍ରବେଶ ପାଇଁ ପରୀକ୍ଷା କରାଯାଏ । ଆମ ମନ ସୁହାଇଲା ଭଳି ପରୀକ୍ଷାଟିଏ ସ୍ଥିର କରୁ । ପ୍ରଶ୍ନଟିଏ ପଚାରି ଆମ ପିଲାଙ୍କୁ ଆମେ ବାଛୁଁ । ଅନ୍ୟମାନଙ୍କୁ ବାହୁଡ଼େଇ ଦେଉଁ, କାରଣ ସେମାନଙ୍କ ସାଟି ଫିଟିଲା ନାହିଁ । ଏ ପିଲାଙ୍କର ହେଲା ପରାଜୟର ବାହୁଡ଼ାଯାତ୍ରା । କେତେ ଦୁଃଖ, କଷ୍ଟ ଓ ଯନ୍ତ୍ରଣା । ଏମାନେ ହାତରେ ହତହତିଆର କାମ କରି ପାରିଥାନ୍ତେ । ଚିତ୍ର ଆଙ୍କି ପାରିଥାନ୍ତେ, ଗୀତ ଗାଇଥାନ୍ତେ, ନାଚିଥାନ୍ତେ, ଖେଳିଥାନ୍ତେ, ଲେଖିଥାନ୍ତେ, ଇତ୍ୟାଦି । ଏସବୁ ଦେଖାଗଲା କି ? ଏସବୁ କଅଣ ସମାଜ ପାଇଁ ଆବଶ୍ୟକ ନୁହେଁ କି ? ଏ ସବୁ ପାଇଁ ଆମ ଶିକ୍ଷାନୁଷ୍ଠାନରେ ପର୍ଯ୍ୟାପ୍ତ ପରିମାଣରେ ସୁବିଧାସୁଯୋଗ ରହିବା ଉଚିତ ନୁହେଁ କି ? ଶିକ୍ଷାରେ ସମାନ ସୁଯୋଗ ରହିଲା କି ? ଫଳରେ ଅଭାବ, ଅସନ୍ତୋଷ ଓ ଅଶାନ୍ତି । ବୈଫଲ୍ୟ ଓ ବ୍ୟଥାରେ ପିଲେ ସନ୍ତୁଳିତ । ପିତାମାତା ହଇରାଣ ହରକତ । ସମାଜ ହଡ଼-ବଡ଼େଇ ଯାଉଛି । ସେଠି ବିଜୟ ହେବ କିପରି ? ସ୍କୁଲରେ ବସି ବସି ଫେଲିଲାବେଳକୁ ଚମ୍ପୁଟାଚମୁଟି, ମାରାମାରି ଓ ଧସ୍ତାଧସ୍ତି । ଆମ୍ଭମାନେ, ଫୁଲବାଲେ ଓ ଦଙ୍ଗାହାଙ୍ଗାମି । ଆମ ସାମାଜିକ ଶିକ୍ଷାର ଏସବୁ ଅସାମାଜିକ ପରିଣତି ନହୋଇ ଯିବ କୁଆଡ଼େ ? ଦିନକୁ ଦିନ ପରାଜୟ ପୁଞ୍ଜିଭୂତ ହେଉଛି । ମନସ୍ତାପ ମଧ୍ୟ । କଥାରେ ଅଛି : Failure is the pillar of success. ବୈଫଲ୍ୟ ହିଁ ବିଜୟର ସୋପାନ ସ୍ୱରୂପ । କିନ୍ତୁ ଏ କଥା କରୁଛି କିଏ ? ପକ୍ଷାନ୍ତରରେ— Success has many parents and failure is an orphan. କେହି ପିଲା ଯଦି ବିପୁଳ ବିଜୟ ହାସଲ କରନ୍ତି, ତେବେ ପ୍ରଶାସନର ଏହା ଗୌରବ, ଶିକ୍ଷକର ଗର୍ବ ଓ ଶିକ୍ଷାନୁଷ୍ଠାନର ଏହା ସୌରଭ । ବାପା ମା' ଫାଟିପଡ଼ନ୍ତି । ଭଲ କଥା, କିନ୍ତୁ କାହାରି ପରାଜୟରେ ଆମେ ଚିନ୍ତିତ ହେଉଁ କି ? Feed back ଓ monitoring କରୁଛି କିଏ ? ସେ ଫେଲ୍ ହେଲେ, କୁଳକିନାରା ରହିଲା ନାହିଁ । ସେ ଛିନ୍ନ ପାଙ୍କ୍ତିରୁ ଗଲେ । କିଏ ଖେଳ ଧରୁଛି ? ତେଣୁ ସେ ହେଲେ ବିରୋଧୀ, ବିଦ୍ରୋହୀ ଓ ବିପ୍ଳବୀ ।

ସବୁଠି ଏକ ପ୍ରକାର ପାଠ୍ୟତାଲିକା, ପାଠ୍ୟବହି, ପ୍ରଣାଳୀ ଓ ପରୀକ୍ଷା । ବିଭିନ୍ନତାର ବିଚାର କରାଗଲା କି ? ପୁଅ, ଝିଅ, ସହର, ଗାଁଗଣ୍ଡା, ହରିଜନ, ଗିରିଜନ, ସଭିଙ୍କ ପାଇଁ ଏକାବେଳେକେ ଏକ ଗୀତ କାହାଣୀ ଓ କବିତା । ଶ୍ରେଷ୍ଠ ପିଲାଙ୍କ ପାଇଁ integrated ଓ ungraded ପଦ୍ଧତି କଥା କୁହାଯାଉଛି । କିନ୍ତୁ କାହିଁ, କେଉଁଠି ଓ କିପରି ? ଆମ ସମାଜରେ ପାହାଚ ପାହାଚ । ଆମ ଚିନ୍ତାରେ ସେଇଆ । ଆମ ପ୍ରଶାସନ ଓ ଆମେ ସେଇଆ । ଏହା ଫଳରେ ପିଲାଙ୍କ ପ୍ରତିଭା ଉଧେଇ ପାରୁଛି କି ? ବରଂ ପିଲାଙ୍କର ପରାଜୟ ଓ ଶିକ୍ଷା ଶ୍ରୀହୀନ । ତେଣୁ ସମାଜର ବିଜୟ କାହିଁ ?

ପରିଶେଷରେ ରାଜନୈତିକ ଓ ସାମାଜିକ ସ୍ଥିତି ବିଷୟରେ ଆଲୋଚନା କରିବା । ଶିକ୍ଷାକୁ ଏହାର ସାଧନ, ବଳିଷ୍ଠ ସାଧନ ରୂପେ ଗ୍ରହଣ କରାଯାଏ । ଏହା ସତ୍ତ୍ୱେ ରାଜନୈତିକ ଓ ସାମାଜିକ ଦର୍ଶନ ହିଁ ଶିକ୍ଷାର କାରଣ ଓ ଏହା ପାଇଁ ଅନୁକୂଳ ପରିବେଶ 'ଯୋଗାଇ ଥାଏ ।

ବସ୍ତୁତଃ ଶିକ୍ଷା ହେଉଛି ସାମାଜିକ ବିକାଶର ସାଧନ ଓ ସାଧ୍ୟ । ଏହି ପରିପ୍ରେକ୍ଷୀରେ ବିଶ୍ୱ ତଥା ରାଷ୍ଟ୍ରର ରାଜନୈତିକ ଓ ସାମାଜିକ ଦର୍ଶନ ହିଁ ବ୍ୟକ୍ତିବିଶେଷଙ୍କର ସର୍ବୋତ୍ତମ ବିକାଶର ସହାୟକ ହେବା ଉଚିତ । ବିଜୟୀର ବୈଭବ ସମସ୍ତଙ୍କୁ ତଥା ବ୍ୟକ୍ତିବିଶେଷଙ୍କୁ ମିଳିବା ଉଚିତ । ଜାତି, ଧର୍ମ, ବର୍ଣ୍ଣ ଆଦି ଦ୍ୱାରା ବର୍ଗୀକୃତ ସମାଜରେ ସମସ୍ତଙ୍କୁ ବିଜୟାନନ୍ଦ ଦେବା ସମ୍ଭବ କି ? ପ୍ରଶାସକୀୟ ଉଦ୍ଭିଜନରେ ସଂଘର୍ଷ ହିଁ ସୁନିଶ୍ଚିତ । ଏପରି ସ୍ଥଳରେ ପଞ୍ଚାୟତରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ଆମ ଗଣତାନ୍ତ୍ରିକ ପଦ୍ଧତିରେ ହିଂସା, ଦ୍ୱନ୍ଦ୍ୱ, ବାଦ ଓ ବିସମ୍ବାଦ ସୃଷ୍ଟି ହେଉଛି । ଧରନ୍ତୁ, କୌଣସି ନିଷ୍ପତ୍ତି ନିଆଯିବ ଓ ଏଥିରେ ଶହେ ଜଣ ଲୋକ ସମ୍ପୃକ୍ତ । ଏମାନଙ୍କ ମଧ୍ୟରୁ ଯଦି ୪୯ ଜଣ ଗୋଟିଏ ମତ ଦିଅନ୍ତି ଓ ଅବଶିଷ୍ଟ ୫୧ ଜଣ ଭିନ୍ନ ମତ ପୋଷଣ କରନ୍ତି ତେବେ ସଂଖ୍ୟାଧିକ୍ୟ ହେତୁ ୫୧ ଜଣଙ୍କର ମତ ସପକ୍ଷରେ ଭୋଟ ଉଠେ । ଏହାହିଁ ହୁଏ ନିଷ୍ପତ୍ତି । ଏହା ଫଳରେ ବିଜୟ ୫୧ ଜଣଙ୍କର । ସେମାନେ ବିଜୟ ପଟୁଆର ବାହାର କରନ୍ତି । ମାତ୍ର ୪୯ ଜଣ ମ୍ରିୟମାଣ, ବିଷଣ୍ଣ ଓ ପ୍ରତିହିଂସାପରାୟଣ । ଏକ ପକ୍ଷରେ ଅହମିକାର ଗୁରୁଗର୍ଜନ ଓ ଅନ୍ୟ ପକ୍ଷରେ ଦାଉ ସାଧିବାର ଅନ୍ତର୍ଦାହୀ ଗୁଞ୍ଜନ । ୫୧ରୁ ୨ ଜଣ ଆସି ୪୯ରେ ମିଶାଇ ସେମାନଙ୍କର ପ୍ରତିଷ୍ଠା ସ୍ଥାପନର ସୁଯୋଗ ଖୋଜା ଚାଲେ । ମହାତ୍ମା ଗାନ୍ଧି, ବିନୋବା, ଜୟପ୍ରକାଶ ଆଦି ଏହି ହାତଟେକା ବା ମୁଣ୍ଡଗଣା ଗଣତନ୍ତ୍ରର ଘୋର ବିରୋଧ କରିଛନ୍ତି । ପ୍ରତ୍ୟେକଙ୍କ ମତର ସ୍ୱାତନ୍ତ୍ର୍ୟ ରହିଛି ଓ ସେଥିପ୍ରତି ସମ୍ମାନ ଦେବା ଉଚିତ ।

ଅତଏବ ସଂଖ୍ୟାଧିକ୍ୟର ନୁହେଁ, ସଂପୃକ୍ତ ସମସ୍ତଙ୍କର—ପ୍ରତ୍ୟେକଙ୍କର ବିଜୟ ଆବଶ୍ୟକ । ଏଥିରେ ଧନ, ଜନ ଓ ବାହୁର ଜୟ ନାହିଁ, ହୃଦୟର ଜୟ ରହିଛି । ପରାଜୟ ଓ ପରାଜିତ ମନୋଭାବ ନାହିଁ । ପରାଜିତ ମନୋଭାବରୁ ପ୍ରତିହିଂସା ଓ ବିଦ୍ରୋହ ଜାତ ହୁଏ ।

ଅର୍ଥନୈତିକ ବିକାଶର ଉକ୍ତ ନୀତି ହିଁ ଅନୁସରଣୀୟ । ପ୍ରତିଦ୍ୱନ୍ଦ୍ୱିତାମୂଳକ ବ୍ୟବସ୍ଥାରୁ ସଂଘର୍ଷ ସୃଷ୍ଟି ହୁଏ । ଜୟ ପରାଜୟର ପ୍ରଶ୍ନ ରହିଛି । ଅସାଧୁତା, ପାପାଚାର, ଅନ୍ୟାୟ ଓ ଅନୀତି ହିଁ ଆମ୍ଭମାନଙ୍କ ଗତି ଓ ପ୍ରକୃତି ହୋଇପଡ଼େ । ବିକେନ୍ଦ୍ରିତ ତଥା ସହଯୋଗ-ମୂଳକ ସମ୍ପର୍କରେ ସମସ୍ତଙ୍କ ପାଇଁ କ୍ଷମତାନୁରୂପ କର୍ମସଂସ୍ଥାନ, ଅର୍ଥନୀତିର ପ୍ରଗତି ଓ ସମସ୍ତଙ୍କ ସର୍ବନିମ୍ନ ଅଭାବର ମେଣ୍ଟାଣ ସାଧନ କରାଯାଇପାରେ ।

ଗୀତାର ନିମ୍ନୋକ୍ତ ଶ୍ଳୋକ ଉଦ୍ଧାର କରି ଉପସଂହାର କରିବା—

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ, ଯତ୍ର ପାର୍ଥୋ ଧନୁର୍ଦ୍ଧରଃ
ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ ।

ଯେଉଁଠାରେ ନ୍ୟାୟ ଓ ଧର୍ମ ରହିଛି ଏବଂ ଏଥି ସଙ୍ଗେ ସଙ୍ଗେ ନିଃସ୍ୱାର୍ଥ ଓ ନିଷ୍କାମ କର୍ମ ନିରନ୍ତର ଚାଲିଛି ସେ ସ୍ଥାନରେ ବିଜୟ, ସମ୍ପତ୍ତି ତଥା ଉତ୍ତରୋତ୍ତର ଉନ୍ନତି ଅବିଚଳିତ ରହିବ । ବ୍ୟକ୍ତି, ବିଶ୍ୱ ଓ ଦେଶ ପାଇଁ ଏହାହିଁ ପ୍ରୟୋଜନୀୟ ।

---

# ଶିକ୍ଷା ଏକ ଚିରନ୍ତନ ଆହ୍ୱାନ

"ଯେପରି ଅଛୁ ସେପରି ରହୁ"—ଏହା ଗତାନୁଗତିକତା । ଏ ପ୍ରକାର ମନୋଭାବକୁ "ଯଥାସ୍ଥିତି" କହନ୍ତି । ଶିକ୍ଷା ଓ ସମାଜ ଅବିକଳ ଯେପରି ଚାଲୁ, ସେଥିରେ ପରିବର୍ତ୍ତନ ନ ହେଉ—ଏହା 'ଯଥାସ୍ଥିତି'ର ନିଦର୍ଶନ । ଏହା ପରିବର୍ତ୍ତନର ପରିପନ୍ଥୀ । ନବ ପ୍ରବର୍ତ୍ତନର ସମ୍ଭାବନା ଏଥିରେ ନଥାଏ । ସୃଜନଶୀଳତା ଏଥିରେ ବିଡ଼ମ୍ବିତା ହୋଇଯାଏ । ପ୍ରଗତି ଓ ପରିବର୍ତ୍ତନ ସପକ୍ଷରେ ବହୁ ଯୁକ୍ତି କଲେ ସୁଦ୍ଧା ବସ୍ତୁତଃ ପରିଶ୍ରମକାତରତା ଏହାର ଆବାହନ କରିବାକୁ ଦିଏ ନାହିଁ । ଫଳରେ ଯଥାସ୍ଥିତି ମଧ୍ୟ ସୁଖଦାୟକ ହୁଏ । ବେଶ୍ ଆରାମଦାୟକ ଲାଗେ । ଏହି ମନୋଭାବ ମନରେ ଜମିଯାଏ । ବେଳେବେଳେ ଚିଡ଼ିଲାଗେ ଓ ମନ ଉକୁଟି ଯାଏ, ତଥାପି ସାହସିକତାର ଅଭାବ ଓ କର୍ମବିମୁଖତା ହେତୁ ପୁଣି ଯଥାସ୍ଥିତିର ମାଯାରେ ବୁଡ଼ି ରହିବାକୁ ପଡ଼େ ।

ଶିକ୍ଷା ଓ ସମାଜରେ, ବିଶେଷତଃ ଯାହା ଅନୁଭବ କରାଯାଏ, ଶିକ୍ଷାରେ ପରିବର୍ତ୍ତନର ସୂତ୍ରପାତ କରିବା ପାଇଁ କ୍ରମାଗତ ଚାପ ଆସୁଛି । ଏହି ଚାପ ଦୁଇ ଆଡୁ ଆସେ, ଭିତରୁ ଓ ବାହାରୁ । ଗତାନୁଗତିକ ଧାରାରେ ଚାଲିସିବାକୁ ଦିଆଯାଏ ନାହିଁ । ଏହା ପରିବର୍ତ୍ତିତ ହେବା ଉଚିତ । ଏହି ଚାପ ସ୍ୱାଭାବିକ ଧାରାରେ ପଡ଼େ । ଶିକ୍ଷା କାର୍ଯ୍ୟକ୍ରମ ଓ ଶିକ୍ଷାପ୍ରକ୍ରିୟା ଚାଲୁଥିବାବେଳେ ଚାପ ଆସିଯାଏ । ପରୀକ୍ଷା ଯେଉଁ ଉଦ୍ଦେଶ୍ୟ ସାଧନ କରିବାକୁ ଇଚ୍ଛା ଯାଉଛି ତାହା ହୋଇପାରେ ନାହିଁ । ପାଠ୍ୟକ୍ରମ ଓ ପୁସ୍ତକ ନିଜର ସ୍ୱକୀୟ ଲକ୍ଷ୍ୟ ସାଧନ କରିପାରେ ନାହିଁ । ପ୍ରଶାସନରେ ବିଭ୍ରାନ୍ତି ଉପୁଜି ଯାଏ । ସାଙ୍ଗଠନିକ ବିଚ୍ୟୁତି ଘଟେ । ଅନୁଶାସନ ଓ ସମୀକ୍ଷା ଯେଉଁ ପରିମାଣରେ ରହିବାର କଥା ଓ ବୃଦ୍ଧି ପାଇବା ଆବଶ୍ୟକ ତାହା ହୋଇପାରେ ନାହିଁ । ଶିକ୍ଷାଯନ୍ତ୍ରନ ଯେତିକ ସଜୀବ ଓ ସକ୍ରିୟ ହେବାର କଥା ତାହା ନହୋଇ ବରଂ ନିର୍ଜୀବ ଓ ନିଷ୍କ୍ରିୟ ହୋଇଯାଏ । ସମନ୍ୱୟ, ସହଯୋଗ ଓ ସଂଯମର ମାତ୍ରା କମିଯାଏ । ଏହାହିଁ ଆଭ୍ୟନ୍ତରୀଣ ଚାପ, ଶିକ୍ଷାର ପରିବର୍ତ୍ତନ ପାଇଁ । ବିଲକ୍ଷଣ ଦେଖାଯାଏ । ତେଣୁ ସଚେତନ ହୋଇ ଶିକ୍ଷାର ପରିବର୍ତ୍ତନ ସତତ ସାଧନ କରିବା ଅନୁଧ୍ୟାନ-ସାପେକ୍ଷ ହୁଏ ।

ଏହି ଭିତର ଚାପ ଛଡ଼ା ବାହାର ଚାପର ବଳ ଖୁବ୍ ବେଶି । ଏହି ଯୁଗରେ ଏହାର ବଳ ବଢ଼ିଯାଇଛି । ଚାରି ଲୁଗାରେ ତାଳି ପକାଇଲା ପରି ଭିତର ଚାପକୁ ସମ୍ଭାଳି ନିଆ-

ଯାଉଛି । କିନ୍ତୁ ବାହାରର ସ୍ୱରୂପ ବହୁରୂପରେ ଦେଖା ଯାଉଛି । ଜ୍ଞାନର "ବୃଦ୍ଧି" ହେତୁ ବାହାର ସ୍ୱରୂପ ଶିକ୍ଷା କ୍ଷେତ୍ରରେ ଲକ୍ଷ ହୋଇପଡ଼ୁଛି । ବିଂଶ ଶତାବ୍ଦୀର ଶେଷ ଭାଗରେ ଜ୍ଞାନର ବୃଦ୍ଧି ନାହିଁ ନଥିବା ବେଗରେ ଗ୍ରୁଲଛି । ଜ୍ଞାନରାଜ୍ୟରେ ଅଘଟଣ ଘଟୁଛି । ଏହାକୁ ଜ୍ଞାନର ବିସ୍ଫୋରଣ ଆଖ୍ୟା ଦିଆଯାଇଛି । ବିଗତ ୧୫ ବର୍ଷ ମଧ୍ୟରେ ଜ୍ଞାନର ପରିସର ବିଶେଷ କରି ବିଜ୍ଞାନ କ୍ଷେତ୍ରରେ ସ୍ୱରଗୁଣ ବଢ଼ିଯାଇଛି । ଏହି ବୃଦ୍ଧିର ମାତ୍ରା ୭ ବା ୮ ବର୍ଷ ମଧ୍ୟରେ ଦ୍ୱିଗୁଣିତ ହେଉଅଛି । ମାନବ ଇତିହାସରେ ଏ ପର୍ଯ୍ୟନ୍ତ ଯେତେ ଯେତେ ଜ୍ଞାନପିପାସୁ ଗବେଷକ ଓ ବୈଜ୍ଞାନିକ କାମ କରିଅଛନ୍ତି ସେମାନଙ୍କ ମଧ୍ୟରୁ ଶତକଡ଼ା ୯୦ ଭାଗ ଏବେ ଆମ ସମୟରେ କାର୍ଯ୍ୟରତ ରହିଛନ୍ତି । ସେମାନଙ୍କର ଶ୍ରମର ନିଷ୍ଠା ଓ ସାଧନାର ଗତି ସମ୍ଭବତଃ ଅଧିକ ଶାଣିତ ଓ ଅବିରତ ହୋଇଅଛି ।

ଏହି ଜ୍ଞାନ ବୃଦ୍ଧିର ଅନ୍ୟ ଏକ ଉଲ୍ଲେଖନୀୟ ଦିଗ ରହିଛି । ବୈଜ୍ଞାନିକ ଆବିଷ୍କାର ଓ ଏହାର ବ୍ୟାପକ ପ୍ରୟୋଗ ମଧ୍ୟରେ ସମୟର ବ୍ୟବଧାନ ଦିନକୁ ଦିନ କମିବାରେ ଲାଗିଛି । ଫଟୋଗ୍ରାଫି ଜାତର ଆବିଷ୍କାରକୁ କାମରେ ଲଗାଇବା ପାଇଁ ମନୁଷ୍ୟକୁ ୧୧୨ ବର୍ଷ ଲାଗିଯାଇଥିଲା । ସେହିପରି ଭାବରେ ଦେଖିବାକୁ ଗଲେ ଟେଲିଫୋନ ପାଇଁ ୫୬ ବର୍ଷ, ରେଡ଼ିଓ ପାଇଁ ୩୫ ବର୍ଷ, ଟେଲିଭିଜନ ପାଇଁ ୧୨ ବର୍ଷ, ଏଟମ୍‌ବମ୍ ପାଇଁ ୬ ବର୍ଷ ଲାଗିଲା । ଟ୍ରାନ୍‌ଜିଷ୍ଟର ୧୯୪୮ ମସିହାରେ ଆବିଷ୍କୃତ ହୋଇ ୩ ବର୍ଷ ପରେ ଅର୍ଥାତ୍ ୧୯୫୧ ସାଲରେ ଏହାର ବହୁଳ ବ୍ୟବହାର ସମାଜରେ କରାଯାଇଅଛି । ଠିକ୍ ସେହିପରି ମାତ୍ର ଦୁଇ ବର୍ଷର ବ୍ୟବଧାନ ପରେ, ଅର୍ଥାତ୍ ୧୯୫୩ରେ ସୋଲାର ବେଟେରି ଆବିଷ୍କୃତ ହୋଇ ୧୯୫୫ ମସିହାରେ ଏହାର ବ୍ୟାପକ ବ୍ୟବହାର ସମାଜରେ କରାଯାଇଅଛି ।

ଜ୍ଞାନପିପାସୁ ସାଧକଙ୍କର ଓ ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କର ଆବିଷ୍କାର ଓ ଏହାର ସାମାଜିକ ପ୍ରୟୋଗ ମଧ୍ୟରେ ସମୟର ବ୍ୟବଧାନ କ୍ରମେ କମି ଯାଉଥିବା ବିଶେଷ ଉଲ୍ଲେଖଯୋଗ୍ୟ । ଏ ସବୁର ପ୍ରଭାବ ସମାଜ ଓ ଶିକ୍ଷା ଉପରେ କ୍ରମେ ବଳବତ୍ତର ହେଉଅଛି । ମନୋରାଜ୍ୟରେ ତଥା ସମାଜରେ ଏକ ଆଲୋଡ଼ନ ଆରମ୍ଭ ହୋଇଅଛି । ତେଣୁ ଶିକ୍ଷାର ବିଭିନ୍ନ ସ୍ତରରେ ପାଠ୍ୟବିଷୟ, ପାଠପ୍ରଣାଳୀ, ପାଠଯୋଜନା, ବିନ୍ୟାସ ଓ ସମାବେଶ କିପରି କରାଯିବ ଓ ଏସବୁ କି ପ୍ରକାର ରୂପ ନେବ, ଏହାହିଁ ଚିନ୍ତାର ବିଷୟ । ଏଥିପାଇଁ ଏକ ଯୁଗାନ୍ତକାରୀ ଆମୂଳ ପରିବର୍ତ୍ତନ କରିବାକୁ ପଡ଼ିବ । ସମାଜର ପରିବର୍ତ୍ତନ ହେଉନାହିଁ ବା ହେବ ନାହିଁ, ଏପରି ଏକ ଅମୂଳକ ଧାରଣା ମୂଳରୁ ଚୂଲି ଯାଏଁ ଆମକୁ ଗ୍ରାସ କରୁଛି । ଜ୍ଞାନର ଭଣ୍ଡାର ଯେତିକି ଅଛି ସେତିକି ରହିବ, ଏହା ଏକ ମାନସିକ ବ୍ୟାଧିର ଲକ୍ଷଣ । ଶିକ୍ଷାର ବିଷୟ ଯାହା ଅଛି ତାହାହିଁ ରହିବ, ଏହା ଏକ ଅମଙ୍ଗଳତାନ୍ତ୍ରିକ ଚିନ୍ତା । ଏସବୁ ପରିବର୍ତ୍ତନ ବିରୋଧୀ ଚିନ୍ତାରୁ ଆମକୁ ମୁକ୍ତ ରହିବାକୁ ପଡ଼ିବ ।

ପରିବର୍ତ୍ତନ ବିଷୟରେ ଆମେ କେବଳ କର୍ତ୍ତୃପକ୍ଷ ଓ ଶାସନ ଆଡ଼କୁ ଦୃଷ୍ଟି ରଖିଥାଉଁ । ଗୋଟାଏ ନିର୍ଦ୍ଦେଶ ପ୍ରତି ଦୃଷ୍ଟି ଦେଇ ପରିବର୍ତ୍ତନ ମୂଳରେ କୁଠାରଘାତ କରାଯାଏ । କିନ୍ତୁ

ଏହା ଦ୍ୱାରା ପରିବର୍ତ୍ତନ ସାଧିତ ହୋଇପାରିବ ନାହିଁ । ନିର୍ଦ୍ଦେଶ ଓ ଆଦେଶର ଅଭାବ ଏ ଦେଶରେ ବା ଅନ୍ୟତ୍ର ନାହିଁ—କିନ୍ତୁ ପରିବର୍ତ୍ତନ କାହିଁ ? ସମସ୍ତେ ଏହି ରୂପରେ ପ୍ରଭାବିତ ହୋଇ ପରିବର୍ତ୍ତନ ପାଇଁ ଚିନ୍ତାକୁଳ ହେବା ଦରକାର । ଏହା ସମଗ୍ର ଶିକ୍ଷାପଦ୍ଧତି ପାଇଁ ସମସ୍ତଙ୍କ ସମ୍ମୁଖରେ ଏକ ଚିରନ୍ତନ ଆହ୍ୱାନ । ଶିକ୍ଷକ ଓ ସମାଜ ସେବକ ପରିବର୍ତ୍ତନ ଅଭିମୁଖୀ ହେବେ । ତଦନୁସାରେ ଜ୍ଞାନ ଅର୍ଜନ କରିବେ ଓ କୌଶଳ ଅବଲମ୍ବନ କରିବେ ।

---

# ମନୁଷ୍ୟ ଓ ମଣିଷପଣିଆ

ଆମେ ମନୁଷ୍ୟମାନଙ୍କୁ ଦେଖୁଛୁଁ । କଥା ହେଉଛୁଁ । କାରବାର କରୁଛୁଁ । ସେମାନଙ୍କ ସହିତ ସମ୍ପର୍କ ହୋଇଛୁ । ବିଭିନ୍ନ ଅବସ୍ଥାରେ ଦୁଃଖସୁଖ ଅନୁଭବ କରୁଛୁଁ । ମନୁଷ୍ୟମାନଙ୍କ ସଂଖ୍ୟା ବଢ଼ିଛି । ଜନଗଣନାରୁ ଜଣାପଡ଼ୁଛି । ଯେଉଁ ଗହମୂଳ, ଗାଁମୁଣ୍ଡ ନିର୍ଜନ ଥିଲା, ଆଜି ସେ ଜନାକୀର୍ଣ୍ଣ ହୋଇଛି । ମଶାଣି ଭୂଇଁ, ଗୋଚର ପଡ଼ିଆ ଓ ସର୍ବସାଧାରଣ ତୋଟା ଆଜି ବ୍ୟକ୍ତିଗତ ଜମିଜମାରେ ପଶୁଛି । ତେବେ ମନୁଷ୍ୟ ତ ଅଛନ୍ତି ସତ; କିନ୍ତୁ ମଣିଷପଣିଆ କାହିଁ ?

ତେବେ ଏ ପ୍ରଶ୍ନ କାହିଁକି କରାଯାଉଛି ? ମଣିଷପଣିଆ ନଥାଇ ମନୁଷ୍ୟ କଅଣ ହୋଇପାରନ୍ତି କି ? ମନୁଷ୍ୟ ଓ ମଣିଷପଣିଆ କଅଣ ଭିନ୍ନ ଭିନ୍ନ କି ? ତେବେ ମଣିଷ-ପଣିଆ କାହାକୁ କହନ୍ତି ?

ମଣିଷପଣିଆ ଏକ ବସ୍ତୁ ନୁହେଁ, ଯାହାକୁ ହାତରେ ଧରିହେବ ଓ ଆଖିରେ ଦେଖି-ପାରିବ । ଏହା ଧୂଆଁ ନୁହେଁ, ଯାହାକୁ ହାତଧରି ନକରି ପାରିଲେ ସୁଦ୍ଧା ଦେଖି ହେବ । ଆଜିକାଲି ଅନେକେ ବିଶ୍ୱାସୁଥିଲେ ସୁଦ୍ଧା ଏହା ଆକାଶକୁସୁମ ନୁହେଁ, ଯାହାର ବାସ୍ତବତା ନାହିଁ ଓ ଯାହା ପଛରେ ଧାଇଁ ଧାଇଁ ମନୁଷ୍ୟ ଜୀବନଯାକ କେବଳ ଭୁଆଁ ବଣା ହେବ—କୁହୁଡ଼ିପଛେଁ କରି ଶେଷରେ ଧଡ଼୍‌କିନି ତଳେ ପଡ଼ି ଫାଟିବ । ବସ୍ତୁତଃ ମନୁଷ୍ୟପଣିଆ ହେଉଛି ମାନବ ଜୀବନର ସାରକଥା । ଏହା ତା'ର ସାର୍ଥକତା । ବାଳୁତ ହେଉ ବା ବୃଦ୍ଧ ହେଉ, ପୁଅ ହେଉ ବା ଝିଅ ହେଉ, ରୋଗୀ ହେଉ ବା ସୁସ୍ଥ ହେଉ, ଧନୀ ହେଉ ବା ଦରିଦ୍ର ହେଉ, ପାଠୂଆ ହେଉ ବା ଅପାଠୂଆ ହେଉ—ପ୍ରତ୍ୟେକ ମନୁଷ୍ୟ ଏହାର ଅଧିକାରୀ । ବାଡ଼, ବୃତ୍ତି ଓ ପଦା, ଯାହାର ଯାହା ହେଉ ପଛକେ, ପ୍ରତ୍ୟେକ ଲୋକ ଏହାର ଭାଜନ । ଏହି କାରଣରୁ ମନୁଷ୍ୟ ସର୍ବସୃଷ୍ଟିରେ ଶ୍ରେଷ୍ଠ । ଦେହଧାରୀ ଜୀବମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ହେଉଛନ୍ତି ମନୁଷ୍ୟ । ପଶୁ ଓ ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ ମନୁଷ୍ୟ ବାରିହୋଇଯାଏ, ତା'ର ମନୁଷ୍ୟପଣିଆ ପାଇଁ । କୁହାଯାଏ, "ସର୍ବ ଶରୀର ମଧ୍ୟେ ସାର, ଦୁର୍ଲଭ ନର କଳେବର ।" ଏହି ମଣିଷପଣିଆର ବିକାଶ କରିପାରିଲେ ଦୁର୍ଲଭ ମାନବତନୁ ଯଥାର୍ଥତଃ ସାର୍ଥକ ହୋଇପାରିବ । ଅତଏବ ମନୁଷ୍ୟପଣିଆ ମନୁଷ୍ୟର ଓ ଏହା ମନୁଷ୍ୟର ଆଚରଣ, କାରବାର, ସମ୍ପର୍କ ଓ ଚିନ୍ତାରେ ପ୍ରକାଶ ପାଏ । ମନୁଷ୍ୟ-ଜୀବନର ଶୋଭା, ସୌନ୍ଦର୍ଯ୍ୟ ଓ ସମୃଦ୍ଧି ହେଉଛି ତା'ର ମନୁଷ୍ୟପଣିଆ । ଏହା ତା'ର ଅନ୍ତରର ଉତ୍ସ । ସ୍ପଷ୍ଟ ଓ ଅସ୍ପଷ୍ଟ ଆଚରଣର ଅନ୍ତରାଳରେ ରହି ମନୁଷ୍ୟପଣିଆ ଶକ୍ତି ଓ ସାମର୍ଥ୍ୟ ସଂଚାର କରେ । ମନୁଷ୍ୟପଣିଆ ବର୍ଜିତ

ହେଲେ ମନୁଷ୍ୟ ବିକଳାଙ୍ଗ, ବିଭ୍ରାନ୍ତ ଓ ବିକୃତ ହୋଇଯାଏ । ସେ ସଇତାନ ପାଲଟିଯାଏ । ସର୍ବୋତ୍କୃଷ୍ଟ ଅର୍ଜନ ମନୁଷ୍ୟର କଅଣ ହୋଇପାରେ ?

ଅତଏବ ମନୁଷ୍ୟପଣିଆ ହେଉଛି ମନୁଷ୍ୟର ଅନ୍ତର୍ନିହିତ ସମ୍ଭାବନା । ଏହାର ବିକାଶ ପାଇଁ ମନୁଷ୍ୟମାନେ ସଚେତନ ଓ ଉଦ୍ୟମଶୀଳ ହେବା ଉଚିତ । ଯେଉଁ ମନୁଷ୍ୟର ଏହି ବିକାଶ ସାଧିତ ହୋଇନାହିଁ, ସେ ପଶୁ ସଙ୍ଗେ ସମାନ । କେବଳ ଖାଇ, ପିଇ, ଶୋଇ, ପିଲାଛୁଆ କରି ଚଳିବା ଓ ବଂଶ ବିସ୍ତାର କରିବା ପଶୁଙ୍କର ଦୈନନ୍ଦିନ କାମ । ପ୍ରକୃତିର ନିୟମରେ ବୃକ୍ଷଲତା ଓ କୀଟପତଙ୍ଗାଦି ଇତର ପ୍ରାଣୀ ମଧ୍ୟ ଏପରି କରିଥାନ୍ତି । ଏହା ପଶୁପ୍ରବୃତ୍ତି । ପ୍ରବୃତ୍ତିରେ ପରିଚାଳିତ ମନୁଷ୍ୟ ପଶୁଠାରୁ ହୀନ ହୋଇଯାଏ । କେବଳ ନୁହେଁ, ସେ ଆସୁରି ଭୟଙ୍କର ହୋଇ ସଇତାନ କାରବାର କରେ । ବିଚାର, ବୁଦ୍ଧି, ବିବେକ ତା'ର ଶୂନ୍ୟ ହୋଇଯାଏ । କେବଳ ନିଜ ପେଟ ପୂରାଇ ପିଠିକୁ ଚାହିଁ ଉପରକୁ ଛଦ୍ମବେଶୀ ମନୁଷ୍ୟ ବୋଲି ଜଣାପଡ଼ନ୍ତି । ଦେଶ ତଥା ମାନବ-ସମାଜର ଅତୀତ ଗୌରବରେ ତାଙ୍କ ସ୍ମୃତି କୁଣ୍ଠେମୋଟ ହୁଏନାହିଁ କିମ୍ବା ସାମ୍ପ୍ରତିକ ଆବଶ୍ୟକତା ଓ ଭବିଷ୍ୟତ ଆହ୍ୱାନ ପ୍ରତି ସେ ଅଣ୍ଟାଭିଡ଼ି ଠିଆ ହୁଅନ୍ତି ନାହିଁ । ଏପରି ଅମଣିଷ ମାନେ ପେଟପୂରିଏ ଓ ବେଳେ-ବେଳେ ଦାନବ ହିଁଏ । ପେଟପାଟଣା ପାଇଁ ଓ ସେଥିରୁ ବେଶୀ ହେଲେ ପିଲାକବିଲାଙ୍କ ପାଇଁ ସେ ବଞ୍ଚିଥାନ୍ତି । ସ୍ୱାଙ୍କ ପାଖରେ ମଣିଷପଣିଆର ମାତ୍ରା ପ୍ରାୟ ଶୂନ୍ୟ କହିଲେ ଚଳେ । ସଇତାନର ଦୌରାତ୍ମ୍ୟଲୀଳାରେ କେତେ ଲୋକ ଉନ୍ମତ୍ତ ହୋଇଥାନ୍ତି । ଅତଏବ ମଣିଷପଣିଆର ମାତ୍ରା ବିଭିନ୍ନ ବ୍ୟକ୍ତିଙ୍କ ପାଖରେ କମ୍ ବେଶୀ ହୋଇଥାଏ । ମଣିଷପଣିଆର ମାତ୍ରା ଦାନବଠାରୁ ଦେବ ପର୍ଯ୍ୟନ୍ତ ସରଳରେଖାରେ ଲମ୍ବିଛି । ଗାଣିତିକ ପରିଭାଷାରେ ଏହା ଏକ ନିରବଚ୍ଛିନ୍ନ ରେଖା ଅତ୍ୟଧିକ ମାତ୍ରାରେ (—) ମାଇନସ୍‌ଠାରୁ (+) ପ୍ଲସ୍ ପର୍ଯ୍ୟନ୍ତ । ଅର୍ଥାତ୍ ଯେଉଁମାନଙ୍କର ମଣିଷପଣିଆର ମାତ୍ରା ଶୂନ୍ୟରୁ କମ୍, ସେମାନେ ଦାନବ, ଶୂନ୍ୟ ବା ଅତିକମ୍ ସେମାନେ ପଶୁ ସ୍ତରରେ ଥାନ୍ତି । କିନ୍ତୁ ଯେଉଁମାନେ ଅଧିକ ମାତ୍ରାରେ ମଣିଷ-ପଣିଆର ବିକାଶ କରିଥାନ୍ତି ସେମାନେ ଦେବୋପମ । ସେମାନେ ଦିବ୍ୟଜ୍ଞାନର ଅଧିକାରୀ ଓ ଜଗତଯାକକୁ କୁଟୁମ୍ବ କରିଥାନ୍ତି । ଏଥିପାଇଁ ସେମାନେ ନିଜ ଜୀବନକୁ ସମର୍ପଣ କରିଥାନ୍ତି । ଦୁଃଖୀରଙ୍କୀ ଏପରିକି ଚଢ଼େଇଚିରଗୁଣୀଙ୍କ ସଙ୍ଗେ ସମସ୍ୱର ହୋଇଥାନ୍ତି । କୁହାଯାଏ, "ମନୁଷ୍ୟ ଦେହେ ଦିବ୍ୟଜ୍ଞାନ, ଦେଖି ସନ୍ତୁଷ୍ଟ ଭଗବାନ ।" ସେହି କାରଣରୁ ଦେଖାଯାଏ, "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।" କିନ୍ତୁ ଯେଉଁ ବ୍ୟକ୍ତି ମଣିଷପଣିଆରୁ ବିବର୍ଜିତରୁ ସେ ସଦିନ ଗାର୍ହସ୍ଥ୍ୟ ଜୀବନ ପାଇଥିଲେ ହେଁ ଏହାକୁ ହିଂସ୍ରଜନ୍ତୁ ପରିପୂର୍ଣ୍ଣ ଅରଣ୍ୟରେ ପରିଣତ କରିଦିଏ । କାରଣ ତାଙ୍କର ସାମାଜିକ ଚେତନା ନଥାଏ । ସେ ସ୍ୱାର୍ଥାନ୍ଧ ହୋଇ ହିଂସା, ଅସତ୍ୟ, ଅହଙ୍କାର, ଅଜ୍ଞତା, ଅଭିମାନ ଓ ପରଶ୍ରୀକାତରତାରେ ଜୀବନ ଅତିବାହିତ କରନ୍ତି । ସେ ସକଳ କଳ, ବଳ, କୌଶଳ

ଲାଗି ବିଷୟବୃତ୍ତିରେ ଉନ୍ମତ୍ତ ହୁଅନ୍ତି । ଅଥଚ ଯେଉଁ ବ୍ୟକ୍ତି ମଣିଷପଣିଆର ବିକାଶ କରିପାରିଛନ୍ତି, ସେ ନିଜ ମଧ୍ୟରେ ଏବଂ ପରିବାର, ସମାଜ ଓ ବିଶ୍ୱ ସହିତ ଦରଦୀ ହୃଦୟରେ ନିଜେ ସମତାଳ ହୋଇ ଚାଲନ୍ତି । "ଆତ୍ମବତ୍ ମନ୍ୟତେ ଜଗତ୍"—ତାଙ୍କ ଜୀବନ ଏଥିରେ ସମର୍ପିତ ହୋଇଯାଏ । ଏଥିରୁ ସେ ଅପାର ବିମଳ ଆନନ୍ଦ ପାଆନ୍ତି । ଏହା ତୁଳନାରେ ବିଳାସବ୍ୟସନ ଓ ସୁଖଭୋଗ କିଛି ନୁହେଁ । ଅନ୍ୟର ମଙ୍ଗଳ ଚିନ୍ତାରେ ଏହି ଆନନ୍ଦ ମିଳେ । ମନୁଷ୍ୟ ପାଇଁ ସେ ମନୁଷ୍ୟ ଜୀବନ ଯାପନ କରେ । ଧର୍ମ, ଭାଷା, ସମ୍ପ୍ରଦାୟ ଓ ଚଳଣିର ବିଭିନ୍ନତାର ଊର୍ଦ୍ଧ୍ୱରେ ଥାଏ ମଣିଷପଣିଆ । ଆଧ୍ୟାତ୍ମିକତା ହେଉଛି ଏହାର ପ୍ରାଣକେନ୍ଦ୍ର ଓ ନୈତିକତା ଏହାର ଜୀବନ ।

ଅନେକ ସଚେତନ ସଦନୁଷ୍ଠାନ ଓ ବିବେକୀ ବ୍ୟକ୍ତିବିଶେଷଙ୍କ ପାଇଁ ସାମ୍ପ୍ରତିକ ସାମାଜିକ ସ୍ଥିତି ଘୋର ଉଦ୍‌ବେଗର କାରଣ ହୋଇଛି । ନିଜ ନିଜ ପରିସର ମଧ୍ୟରେ ସେମାନେ ଯଥାଶକ୍ତି ବିଭିନ୍ନ ପଦକ୍ଷେପ ନେଉଛନ୍ତି । ତଥାପି ବିଶ୍ୱ ଆଜି ବିକ୍ଷୁବ୍ଧ । ଆମ ଦେଶ ବିଶାଳ ଭାରତବର୍ଷ ସମସ୍ୟାବହୁଳ । ଜୀବନଧାରାର ଆଧୁନିକ ବିକାଶରେ ଏସବୁ ସମସ୍ୟା ସୀମିତ ହୋଇଥିଲେ ସ୍ୱାଭାବିକ ହୁଅନ୍ତା । କିନ୍ତୁ ଯାହା ଆମ ଚିର ସଞ୍ଚିତ ଓ ତ୍ୟାଗପୂତ ସାଂସ୍କୃତିକ ଜୀବନର ଗୌରବାବହ ପରମ୍ପରା, ସେ ସବୁ ଦୋଦୁଲ୍ୟମାନ । ଆମ ସ୍ୱାଧୀନତା ସଂଗ୍ରାମରେ ସେ ସବୁ ମୂଲ୍ୟବୋଧ ପ୍ରମାଣୀକୃତ ଓ ଆମ ସମ୍ବିଧାନରେ ଜ୍ୱଳନ୍ତ ଆଲୋକ ସ୍ତମ୍ଭ । ଏସବୁ ଧ୍ରୁବତାର ସଦୃଶ । ଆମ ଗତିବିଧି, ଜୀବନଧାରା ଓ ବିକାଶର ପ୍ରଣାଳୀ ଅଧ୍ରୁବ ହେଲେ ମହତ୍ତ୍ୱ ରହିବ କି ? କଳା ଗୋରା, ଛୁଆଁ ଅଛୁଆଁ, ସାନ ବଡ଼, ଧନୀ ନିର୍ଧନ ଆଦି ବହୁବିଧ ଭେଦ ଆମ ଦେଶ ଓ ବିଶ୍ୱକୁ କଳଙ୍କିତ କରୁଛି । ନ୍ୟାୟୋଚିତ ମାନବିକ ଅଧିକାରରୁ ବଞ୍ଚିତ ବହୁ ବ୍ୟକ୍ତି ଓ ଅଞ୍ଚଳ ଶୋଷଣ ଓ କଷଣର ଶରବ୍ୟ ହୋଇ ମାନବସମାଜର ତଥାକଥିତ ପ୍ରଗତି ପ୍ରତି ତାଚ୍ଛଲ୍ୟର ଧିକ୍କାର ଦେଉଛି । ତେବେ "ସତ୍ୟମେବ ଜୟତେ" କାହା ପାଇଁ ଓ କେଉଁଠି ? "ତ୍ୟାଗୀ ହିଁ ପୁରୁଷ ବ୍ୟାଘ୍ର"—କଅଣ ମାତ୍ର ଏକ ଆସ୍ଫାଳନ ? "ଅହିଂସା ପରମ ଧର୍ମ" କଅଣ ଏକ ଦିବାସ୍ୱପ୍ନ ବା ପ୍ରହସନ ? ଜାତୀୟ ସଂହତି ଓ ଆନ୍ତର୍ଜାତିକ ଶୁଦ୍ଧାମଣା ପ୍ରତି ଭ୍ରୂକ୍ଷେପ ନକରି ପ୍ରତି ଦେଶ ଓ ଦେଶାଦେଶାନ୍ତର ମଧ୍ୟରେ ରକ୍ତାକ୍ତ ସଂଗ୍ରାମ ଲାଗି ରହିବ କି ? ସମସ୍ତ ମନାନ୍ତର ଓ ଅଶାନ୍ତିର ସମାଧାନ କେବଳ ମସି ଓ ଅସି ଦ୍ୱାରା ସାଧିତ ହେବ କି ? ଏସବୁ ବିପର୍ଯ୍ୟୟ ଓ ଅଧୋଗତିକୁ ଲକ୍ଷ୍ୟ କଲେ ମଣିଷପଣିଆ ଅଛି କି ବୋଲି ପ୍ରଶ୍ନ ସ୍ୱତଃ ଜାଗ୍ରତ ହୁଏ । ବ୍ୟକ୍ତି ହେଉ, ଦଳ ହେଉ ବା ଅଞ୍ଚଳ ହେଉ—ଏହାର ସ୍ୱାର୍ଥସିଦ୍ଧି ପାଇଁ କେବେହେଁ ନରସଂହାରକୁ ସମର୍ଥନ କରାଯାଇ ପାରେନାହିଁ । ଏହା ଚରମ ଅବିବେକତା ଓ ଏହାର ପଟାନ୍ତର ଇତିହାସରେ ବିରଳ ।

କେବଳ ମୁଣ୍ଡ ଗଣନାରେ ଜନସଂଖ୍ୟା ହୁଏ ନାହିଁ । ଜନସଂଖ୍ୟା ଏକ ସଂଖ୍ୟାତ୍ମକ ବ୍ୟାପାର ନୁହେଁ । ଏହା ଦେଶର ବିକାଶ ପ୍ରକ୍ରିୟାର ଅଙ୍ଗ ଓ ଏହି ପ୍ରକ୍ରିୟାର ଚରମ

ପରୋପକାର ଓ ମଣିଷପଣିଆ ଏହାର ମୁଖ୍ୟ ଉପାଦାନ । ସୁତରାଂ ମାନବପ୍ରେମୀ, ଈଶ୍ୱରଭକ୍ତ ସଚ୍ଚିଦ୍ୟତାରେ ମଣିଷପଣିଆ ପ୍ରକାଶ ପାଏ । ନିଜେ ଖଟି ମୁଣ୍ଡଝାଳ ତୁଣ୍ଡରେ ମାରି ଜୀବିକାର୍ଜନ କରାଯାଏ । ଲୁଣ୍ଠିତ ଧନ ଅଧର୍ମ ବୃଦ୍ଧି । ଆୟୁ ବେଳରେ ଗଛକୁ ହଲାଇଏ କରି ଆସେ; କିନ୍ତୁ ଗଲାବେଳରେ ଏକାବେଳକେ କଲାକନା ବୁଲିଯାଏ । ସତ୍ୟ କହି, ସତ୍ ଚିନ୍ତାକରି ସତ୍‌ପଥରେ ଉପାର୍ଜନ ଓ ଜୀବନ ଯାପନ କରିବା ମନୁଷ୍ୟର ଧର୍ମ । ମାନବିକ ସମ୍ପର୍କ ରକ୍ଷା କରିବାରେ ସେ ଈଶ୍ୱରଭକ୍ତ । କଳିତକଣ୍ଠଳରେ ହିଂସାଚରଣ କରିବାକୁ ପଡ଼େ ନାହିଁ । ଶାନ୍ତି, ଶୀଳ, ଦୟା ଓ କ୍ଷମା ଆଚରଣ କରି ଈଶ୍ୱରପଣିଆ ପ୍ରକାଶ କରାଯାଏ । ସର୍ବୋପରି ଘୃଣା, ଅସୂୟା, ଈର୍ଷା ଆଦି ସମ୍ପୂର୍ଣ୍ଣ ବର୍ଜନ କରି ଜାତି, ବର୍ଣ୍ଣ, ଧର୍ମ, ଅଞ୍ଚଳ, ଭାଷା ଆଦି ନିର୍ବିଶେଷରେ ମାନବ ପ୍ରତି ସମଦୃଷ୍ଟି, ସମ୍ମାନ, ସ୍ନେହ ଓ ସହନଶୀଳତା ନିଜ ବଚନ, ଚିନ୍ତା ଓ କାମରେ ପ୍ରକାଶ କରିଥାଏ । ଏହା ହିଁ ଏ "ବସୁଧୈବ କୁଟୁମ୍ବକମ୍ ।" ସମଗ୍ର ବସୁଧାର ଅଧିବାସୀ ଆମ କୁଟୁମ୍ବ । ଧ୍ୟାନ ରହେ, ସର୍ବଜନହିତାୟ ଓ ସର୍ବଜନସୁଖାୟ । ସଂକୀର୍ଣ୍ଣ ଦୃଷ୍ଟିକୋଣର ସ୍ଥାନ ଏଥିରେ ନାହିଁ । ମନୁଷ୍ୟପଣିଆ ଉପରଠାଉରିଆ ନୁହେଁ । ଏହା ଲୋକଦେଖାଣିଆ ଆଚରଣ ନୁହେଁ । ଏଥିରେ ବରଂ ଆନ୍ତରିକତା ଥାଏ । ଏହା ଆପଣାଛାଏଁ ଫୁଟି ବାହାରେ ଅନ୍ତରରୁ । ଅନ୍ତର ଓ ବାହାର ମଧ୍ୟରେ ସମତା ଆଣି ସମନ୍ୱୟ ରକ୍ଷାକରେ ।

ମଣିଷପଣିଆର ବିକାଶ ଶିକ୍ଷାର କଥା । ପରିବାରର ଲାଳନପାଳନରୁ ଏହାର ବିକାଶ ଘଟେ । ଶିକ୍ଷାଳୟ ଏ ବିଷୟରେ ନିଶ୍ଚିତ ଭୂମିକା ଗ୍ରହଣ କରିବା ଉଚିତ । ସାମାଜିକ ଚେତନା, ଚଳଣି ଓ ଧର୍ମକର୍ମରେ ଏହା ଦୃଢ଼ ହୁଏ । ପିତାମାତା ଓ ଗୁରୁଜନଙ୍କ ଉଦାହରଣ ଓ ଭକ୍ତି ଏଥିରେ ସହାୟକ ହୁଏ । ମହାପୁରୁଷ ଓ ସାଧକମାନଙ୍କ ସାଧନା, ସେବା ଓ ତ୍ୟାଗ ଏଥିପାଇଁ ପ୍ରେରଣା ଦିଏ । ଭଲ ମଣିଷଟିଏ ଖୋଜିବା ପାଇଁ ବହୁ ପୂର୍ବରୁ ଦାର୍ଶନିକ ଡାୟୋଜିନିସ୍ ଲଣ୍ଠନ ଆଲୁଅ ଧରି ଘୂରିଆଡ଼େ ବୁଲିଥିଲେ । ବୁଦ୍ଧ, ଯୀଶୁ, ମହମ୍ମଦ ଆଦି ଯୁଗ-ପୁରୁଷ ବ୍ୟକ୍ତି ଓ ବିଶ୍ୱ ପାଇଁ ଜ୍ୱଳନ୍ତ ଦୃଷ୍ଟାନ୍ତ ରଖିଯାଇଛନ୍ତି । ସତ୍ୟର ପରୀକ୍ଷା ହେଉଛି ମହାତ୍ମା ଗାନ୍ଧିଙ୍କ ଜୀବନ । ନିଜ ଅନ୍ତରରେ ମହାନ୍ ଆତ୍ମାର ସନ୍ଧାନୀ ହୋଇ ପୃଥିବୀ ବକ୍ଷରେ ମଣିଷ-ପଣିଆର ମାହାତ୍ମ୍ୟ ସ୍ଥାପନ କରିଯାଇଛନ୍ତି । ବିନୋବାଜି "ଜୟ ଜଗତ୍, ଜୟ ଭାରତ"ର ଧ୍ୱନି ଶୁଣାଇ ନିଜେ ସେହି ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ ହୋଇ ରହିଛନ୍ତି । ଅହିଂସା, ସତ୍ୟ, ଅସ୍ତେୟ ଆଦି ଏକାଦଶ ବ୍ରତର ପାଳନ ଭଲମଣିଷ ହେବାରେ ସାଧନାର ପଥ ଉନ୍ମୁକ୍ତ କରିଦିଏ । "ସର୍ବେଽତ୍ର ସୁଖିନଃ ସନ୍ତୁ, ସର୍ବେସନ୍ତୁ ନିରାମୟାଃ । ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।" ଏହି ଉପନିଷଦୀୟ ସ୍ତୁତି ଜଗଜ୍ଜନ ମଙ୍ଗଳାକାଂକ୍ଷୀ ହୋଇ "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ" ହେବାର ଏବଂ କହିବାର ଅଧିକାର ଦେବ । ଭଲ ମଣିଷ ହେଲେ ଯାଇ ଅନ୍ୟମାନଙ୍କୁ ଭଲ କରିବାର ସୁଯୋଗ ମିଳିବ । ନିଜ ମଧ୍ୟରେ

ମଣିଷପଣିଆର ବିକାଶ ନକରି ଅନ୍ୟମାନଙ୍କୁ ସୁମନୁଷ୍ୟ ହେବା ପାଇଁ କହିବା ମାତ୍ର ଏକ ନିଷ୍ଫଳ ପ୍ରୟାସ ।

ଆମ ପାଠପଢ଼ାରେ ଆମେ ପୁସ୍ତକ-କୀଟ ହୋଇଯାଉଛୁଁ । ପୁସ୍ତକର ପୃଷ୍ଠାରୁ ବାହାରି ଆସି ମନୁଷ୍ୟପଣିଆ ମନୁଷ୍ୟ ଜୀବନ, ଜୀବନୀ ଓ ଆଚରଣକୁ ଭେଦ ଯାଉ ନାହିଁ । ପାଠପଢ଼ା ମଧ୍ୟ ଜୀବନ୍ତ ହେଉନାହିଁ । କାର୍ଯ୍ୟତଃ କରି ଆମେ ଦେଖୁନାହିଁ । "ଯସ୍ତୁ କ୍ରିୟାବାନ୍ ପୁରୁଷଃ, ସ ବିଦ୍ୱାନ"—ଏପରି ହେଉ ନାହିଁ । ଆମ ବିଦ୍ୱତ୍ତା ମୁଖ୍ୟତଃ ମୁଖରେ ରହୁଛି । ତେଣୁ ଅନେକ ସ୍ଥଳରେ ପାଠୁଆ ଲୋକଙ୍କ ଅପେକ୍ଷା ଗାଁଗଣ୍ଡାର ଅପାଠୁଆ ଲୋକଙ୍କ ଜୀବନରେ ମନୁଷ୍ୟପଣିଆର ମହତ୍ତ୍ୱ ଅଧିକ ଦେଖାଯାଏ । ସରଳ, ନିଷ୍କପଟ ଓ ସ୍ପଷ୍ଟବାଦୀ ଆଚରଣ ଖଟିଖିଆ ନିରକ୍ଷର ଲୋକଙ୍କ ଜୀବନର ଧାରା ହୋଇ ରହିଛି । ସତ୍ୟପଥରେ ଚଳି ବଚନବଦ୍ଧ ଜୀବନ ସେମାନଙ୍କର । ଘରେ ଥିବା ସାମାନ୍ୟତମ ଖାଦ୍ୟକୁ ଅତିଥି ଅଭ୍ୟାଗତଙ୍କ ସେବାରେ ଲଗାଇ ନିଜେ ଉପବାସ ରହିବାର ଦୃଷ୍ଟାନ୍ତ ଅନେକ ପୁରୁଣାକାଳିଆ ପରିବାରରେ ଏବେ ବି ରହିଛି । ନିଜ ସ୍ୱାର୍ଥ ଓ ସୁବିଧାକୁ ଜଳାଞ୍ଜଳି ଦେଇ ଅନ୍ୟ ପାଇଁ ତ୍ୟାଗପୂତ ଜୀବନ ଯାପନ କରିବାର ବିରଳ ଦୃଷ୍ଟାନ୍ତ ଭାରତୀୟ ସଂସ୍କୃତିକୁ ଋଦ୍ଧିମନ୍ତ କରିଛି । କିନ୍ତୁ ଏସବୁ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଆଜି ଚିନ୍ତାର କାରଣ ହୋଇଛି । ସେଥିପାଇଁ କୁହାଯାଏ— ଅଶିକ୍ଷା ବରଂ ଭଲ, କିନ୍ତୁ କୁଶିକ୍ଷା ବିପଜ୍ଜନକ ।

ଏହା ଜଣାଶୁଣା କଥା ଯେ ସାକ୍ଷରତା ବା ଅକ୍ଷରଶିକ୍ଷା ଏକ ଉପାଦେୟ ସାଧନ । ଏହା ଫଳରେ ଆମେ ଯଦି ପୁସ୍ତକ-ସର୍ବସ୍ୱ ବା ପ୍ରମାଣପତ୍ର-ସର୍ବସ୍ୱ ହେବା, ତେବେ ଆମର ମଣିଷପଣିଆର ବିକାଶ ହେବ କି ? ସାକ୍ଷରତାର ପ୍ରସାର ଫଳରେ ସଚେତନତା ଓ ବୃତ୍ତିଗତ କୌଶଳ ଅଧିକ ବଢ଼ୁଛି । କିନ୍ତୁ ଆମ ପାରିପାର୍ଶ୍ୱିକ ସଚେତନତା କ୍ରମେ ଆମକୁ ଆତ୍ମ-ସଚେତନ କରିବା ଉଚିତ । ଏହା ହିଁ ଆମର ସର୍ବ ଶକ୍ତିର ଉତ୍ସ । ଜୀବନ ନୌକାଟିକୁ ସୁଅ ମୁହଁରେ ଭସାଇ ନଦେଇ ଆତ୍ମଶକ୍ତି ଉପରେ ନଙ୍ଗର ଭିଡ଼ି ନେବା ଦ୍ୱାରା ସ୍ରୋତ ପ୍ରବଳ ହେଲେହେଁ ନୌକା ସ୍ଥିର ଗତିରେ ଗ୍ରହିବ । ଉପାର୍ଜନକ୍ଷମ ହେବା ସଙ୍ଗେ ସଙ୍ଗେ ଭଲ ମଣିଷ ହେବା ପାଇଁ ସମର୍ଥ ହେବା ଆବଶ୍ୟକ । ପାରିପାର୍ଶ୍ୱିକ ସଚେତନତା ସହିତ ପ୍ରତିବେଶୀ ସଚେତନତା ବିଶ୍ୱବ୍ୟାପୀ ଓ ବିଶ୍ୱାସୀତ ହୋଇପାରିବ । ଏହା ଫଳରେ ବ୍ୟକ୍ତି ଓ ବିଶ୍ୱ ବିରୋଧଭାବାପନ୍ନ ହୋଇ ସଂଗ୍ରାମୀ ହେବେ ନାହିଁ । ସମନ୍ୱୟର ଦୃଷ୍ଟିଭଙ୍ଗୀରେ ଉଭୟ ସମନ୍ୱିତ ଓ ସମର୍ଥିତ ହୋଇପାରିବେ । ଏହା ମାନବତାର ମହାନ୍ ପରୀକ୍ଷା ଓ ସାଧନା ।

ଅତଏବ ମନୁଷ୍ୟପଣିଆର ବିକାଶରେ ଦୁଇଟି ଶତ୍ରୁ ରହିଛି—(୧) ଦ୍ୱେଷ ଓ (୨) ବଡ଼ିମା । ଆତ୍ମାର ସ୍ୱଚ୍ଛତା ଦ୍ୱେଷ ଦ୍ୱାରା ନଷ୍ଟ ହୋଇଯାଏ, କଳଙ୍କ ଦ୍ୱାରା ଚାର୍ଜି ହୋଇଯାଏ । ବିମଳତାର ଅଭାବରୁ ବଡ଼ିମା ବଢ଼ିଯାଏ । ମନୁଷ୍ୟ ହତାହତ ଜ୍ଞାନ ହରାଇ ଜିଦ୍‌ଖୋର ହୁଏ । ସମସ୍ତଙ୍କୁ କବଳିତ କରିବାର କାମନା ସେ ହାସଲ କରେ । ଶିଖିବାର

ମନୋଭାବ ରହେ ନାହିଁ । ସେ ଅନ୍ୟ ଏକ ଉନ୍ନତ ଓ ଉଚ୍ଚ ସୋପାନକୁ ଉଠିପାରିବ, ଏହି ଧ୍ୟାନ ଧାରଣାର ପଥ ରୁଦ୍ଧ ହୋଇଯାଏ । ଜିଦ୍‌ଖୋର ପରିସ୍ଥିତିରେ ମନୁଷ୍ୟକୁ ଅନ୍ଧ କରିଦିଏ ଓ ସେ ଅନ୍ଧାନୁସରଣ କରେ । କଥା ଓ କାମ ମଧ୍ୟରେ ସମନ୍ୱୟ ରହେ ନାହିଁ ।

ବ୍ୟକ୍ତିଠାରୁ ବିଶ୍ୱ ପର୍ଯ୍ୟନ୍ତ ସବୁଠି ମଣିଷପଣିଆର ବିକାଶ ପାଇଁ ସର୍ବାଧୁନିକ କୌଶଳ ପ୍ରୟୋଗ କରିବା ଉଚିତ । ଏ ଦିଗରେ ବିଜ୍ଞାନର ଗବେଷଣାଲବ୍ଧ ଜ୍ଞାନ ସହିତ ମାନବିକ ଦୃଷ୍ଟିଭଙ୍ଗୀର ଯୋଗାଯୋଗ ସ୍ଥାପନ କରିବାକୁ ପଡ଼ିବ ।

---

# ସାଂପ୍ରଦାୟିକ ସଦ୍‌ଭାବ ଓ ଜାତୀୟ ସଂହତି

ସଂହତିର ବିକାଶ ଦିଗରେ ସଦ୍‌ଭାବ ଅପରିହାର୍ଯ୍ୟ । ବିକାଶ କହିଲେ ସଂହତିର ସୁରକ୍ଷା ଓ ଶ୍ରୀବୃଦ୍ଧି ବୁଝାଏ । ସଂହତିର ପରିସର ଆଞ୍ଚଳିକ, ଜାତୀୟ ଓ ଆନ୍ତର୍ଜାତିକ । ଯଥାର୍ଥ ସଂହତି ପାଇଁ ଏହି ତିନୋଟି ପରିସର ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ବା ବିରୋଧ ନାହିଁ । ବସ୍ତୁତଃ ଗୋଟିଏ ପରିସରରୁ ଅନ୍ୟ ପରିସରକୁ ସଂହତି କ୍ରମପ୍ରସାରିତ ହୁଏ । ସେଥିପାଇଁ ବ୍ୟକ୍ତି ଓ ସମାଜ ଲାଗି ନିର୍ଦ୍ଦିଷ୍ଟ ସମୟସୀମା ଧାର୍ଯ୍ୟ କରାଯାଇ ନାହିଁ । ଏହିସବୁ ସ୍ଥଳରେ ସଦ୍‌ଭାବହିଁ ସଂହତିର ପ୍ରତିପୋଷକ ହୁଏ । ଏହା ଏପରି ଏକ ପାଣିପାଗ ସୃଷ୍ଟି କରେ, ଯେଉଁଥିରେ ସଂହତିର ନିଶ୍ଚିତ ଅଙ୍କୁରୋଦ୍‌ଗମ ସମ୍ଭବ । ସେଠି ଗଛ ଯୋଉ ନାହିଁ କମ୍ବା ମରୁଡ଼ି ନାହିଁ, ବରଂ ପ୍ରତି ମୁହୂର୍ତ୍ତ ଏହା ବ୍ୟକ୍ତି ତଥା ଜାତୀୟ ଓ ବିଶ୍ୱଜୀବନକୁ ପଲ୍ଲବିତ କରେ । ଏହାର ପୁଷ୍ପ ଓ ଫଳ ହେଉଛି ସମୃଦ୍ଧ ବିଶ୍ୱଜୀବନ । ପାରସ୍ପରିକ ଜାତୀୟ ସାଂସାରିକ ଜୀବନ । ସମସ୍ତଙ୍କ ପାଇଁ ଜୟଯାତ୍ରା ।

ପକ୍ଷାନ୍ତରରେ ସଦ୍‌ଭାବ ପରି ସୁନ୍ଦର ଶବ୍ଦ ସମ୍ଭବତଃ ବିରଳ । ସୁସମ୍ପର୍କ ସ୍ଥାପନ କରାଯିବ । ସ୍ନେହର ସମ୍ପର୍କ ଓ ଭ୍ରାତୃତ୍ୱର ସମ୍ପର୍କ ରହିବ । ଆପଣାରକରିବା ସମ୍ପର୍କ । କେହି ମୋର ଶତ୍ରୁ ନୁହନ୍ତି ଓ ମୁଁ କାହାର ଶତ୍ରୁ ନୁହେଁ । ସର୍ବଭୂତେଷୁ ନିର୍ବୈରତା ହେଉଛି ସଦ୍‌ଭାବ । କାହାର ନିନ୍ଦା ମୋ କାନରେ ନପଶୁ ଓ ମୋ ମୁଖରୁ ଅନ୍ୟର ନିନ୍ଦା ନବାହାରୁ । ମୁଁ ସମସ୍ତଙ୍କର ଭଲଟିକୁ ଦେଖେ । ଯଦିଓ ସମସ୍ତଙ୍କର କିଛିଟା ଭୁଲ୍ ଅଛି, ମୋ ଆଖି ସେଠି ନପଡ଼ୁ । ସମସ୍ତେ ମୋର ମିତ୍ର—ମୁଁ ବି ସମସ୍ତଙ୍କର ମିତ୍ର । ମିତ୍ରତା ହିଁ ସଦ୍‌ଭାବ । କାହାର ଅମଙ୍ଗଳ ଚିନ୍ତା ମୋ ମନରେ ନପଶୁ । ମନରେ ଅମଙ୍ଗଳ ଚିନ୍ତା ନରହୁ । ଅମଙ୍ଗଳ କାମ ମୁଁ କରିବି ନାହିଁ । ଅମଙ୍ଗଳ କଥା କହିବି ନାହିଁ । କଥାରେ, କାମରେ ଓ ଚିନ୍ତାରେ ମୁଁ ମଙ୍ଗଳମୟ ହେବି । ଏହିପରି ଭାବରେ ଆମକୁ ସଦ୍‌ଭାବାପନ୍ନ ବା ସମଦୃଷ୍ଟି-ସମ୍ପନ୍ନ ହେବା ଦରକାର । ସଦ୍‌ଭାବ କହିଲେ ଏହିପରି ବୁଝାଏ । ସୂର୍ଯ୍ୟ ଯେପରି ଆଲୋକ ଓ ଉତ୍ତାପ ଦେଇ ଚାଲନ୍ତି, ଆମେ ସେହିପରି ସଦ୍‌ଭାବନା ଓ ଶୁଭେଚ୍ଛା ବାଣିଚାଲିବା । ଆକାର, ପ୍ରକାର, କଥାଭାଷା, ଚାଲିଚଳନ, ଖିଆପିଆ, ଲୁଗାପଟା, କାମଧନ୍ଦା, ରୁଚିଅରୁଚି, ଦେଖାଦେଖି ଆଦି ଦୃଷ୍ଟିରୁ ଆମେ ଅଲଗା । ଆମେ ଏହି ସବୁ ଦୃଷ୍ଟିରୁ ଭିନ୍ନ ଭିନ୍ନ । କିନ୍ତୁ ଆମେ ସମସ୍ତେ ମନୁଷ୍ୟ । ଆମ ଜନ୍ମ ଭାରତରେ । ଭାରତ ଆମ ଜନ୍ମଭୂମି । ତେଣୁ ଆମେ ଭାରତୀୟ । ଆମେ ବିଶ୍ୱବାସୀ । ସମସ୍ତ ବସୁଧା ଆମର କୁଟୁମ୍ବ । ସେଥିପାଇଁ ଆମେ କହି

ଆସିଛୁ, ଲୋକାଃ ସମସ୍ତାଃ ସୁଖିନଃ ଭବନ୍ତୁ । ଲୋକମାନେ ସୁଖୀ ହୁଅନ୍ତୁ । ସନ୍ଥକବି ଭୀମଭୋଇ ପ୍ରାର୍ଥନା କରିଛନ୍ତି, "ମୋର ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ" । ଲୋକମାନଙ୍କ ମଙ୍ଗଳ ପାଇଁ ସେ ପରମାତ୍ମାଙ୍କ ସମୀପରେ ହାତଯୋଡ଼ି ଜଣାଣ କରିଛନ୍ତି । ଏହିପରି ଜନଜୀବନର ମଙ୍ଗଳ ପାଇଁ ପ୍ରାର୍ଥନାର ଦୃଷ୍ଟାନ୍ତ ଅନେକ ଅଛି । ସବୁ ଦେଶରେ ଏହା ସଦ୍‌ଭାବର ପ୍ରାର୍ଥନା ରହିଛି । ବିଭିନ୍ନ ଭାଷାରେ ମଧ୍ୟ ଅଛି । ଭିନ୍ନ ଭିନ୍ନ ଧର୍ମରେ ଏହି ପ୍ରାର୍ଥନା କରାଯାଏ । ସର୍ବଜନ ହିତାୟ, ସର୍ବଜନ ସୁଖାୟ—ଏହା ହିଁ ସବୁଠାରୁ ଉତ୍କୃଷ୍ଟ ପ୍ରାର୍ଥନା । ବେଦବେଦାନ୍ତରେ ମଧ୍ୟ ଏହି ପ୍ରାର୍ଥନା, ଆଜି ବି ସେହି ଜଣାଣ :

ସର୍ବେବୈ ସୁଖିନଃ ସନ୍ତୁ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।

ପୂର୍ବପୁରୁଷ ସଦ୍‌ଭାବ । କେଉଁଠି କିଛିଏ ସଦ୍‌ଭାବର ଅଭାବ ରହିଲା କି ? ନା ନା, ଆଦୌ ନୁହେଁ । ବିବାଦର ମଳଧୂଳି ନାହିଁ । ବୁଦ୍ଧି, ମନ, ଆତ୍ମା ଓ ଇନ୍ଦ୍ରିୟ ସବୁ ସଦ୍‌ଭାବାପନ୍ନ ହୋଇଛନ୍ତି । ବ୍ୟକ୍ତିର ଭ୍ରାତୃତ୍ୱ ଓ ଏକାତ୍ମତା ସଂପୂର୍ଣ୍ଣ ହୋଇଛି । "ମିତ୍ରସ୍ୟ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷାମହେ ।" ବିଶ୍ୱର ପ୍ରାଣୀ ସକଳଙ୍କୁ ମିତ୍ର ଚକ୍ଷୁରେ ଦେଖିବାର ଅଭ୍ୟାସ କରିବାକୁ ହେବ ।

ସଦ୍‌ଭାବର ଅଭାବରେ ଆସେ ସଂପର୍କରେ ଉଦାସୀନତା ବା ତିକ୍ତତା । ଏହି ଉଭୟ ହିଁ ବ୍ୟକ୍ତିବିଶେଷ ତଥା ମାନବସମାଜ ପାଇଁ ମାରାତ୍ମକ । ଉଦାସୀନ ବ୍ୟକ୍ତି ନିଜକୁ ଗୋଟିଏ ଖୋଳପା ମଧ୍ୟରେ ଆବଦ୍ଧ କରି ରଖେ । ଦୁର୍ଭେଦ୍ୟ ବହିରାବରଣ ହେତୁରୁ ସମସ୍ତ ସଂସାର ଓ ସଂଯମଣି ରୁଦ୍ଧ ହୋଇଯାଏ । ବ୍ୟକ୍ତି ଅଣନିଶ୍ୱାସୀ ହୋଇପଡ଼େ । ଜୀବନ ବୃଥା ହୋଇଯାଏ । ବନ୍ଧୁତା ଓ ସ୍ନେହ ଶୁଷ୍କ ହୋଇଯାଏ । ଅପରପକ୍ଷରେ ତିକ୍ତତା ଭୟାନକ ହୋଇପଡ଼େ । ବିଷମୟ ପରିସ୍ଥିତି ସୃଷ୍ଟି କରେ । ବେଳେବେଳେ ଯୁଦ୍ଧ ଲାଗିଯାଏ । ମରାମରି, ହଣାହଣି, ପିଟାପିଟି ଆଦି ଅତି ମାମୁଲି କଥା । ଅବିଶ୍ୱାସ, ସନ୍ଦେହ ଓ କୁତ୍ସାରଟନା ହେତୁ ଶୀତଳ ଯୁଦ୍ଧ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଯାଏ । କୁହାଯାଏ ଯେ ଏକଛତ୍ରବାଦୀ ଶାସକ ଅନ୍ୟ ଦେଶ ସହିତ ତିକ୍ତ ସଂପର୍କ ରଖି ସ୍ୱଦେଶରେ ନିଜ ଆସନକୁ ଅଟଳ କରି ରଖନ୍ତି । ସାନ ହେଉ ବା ବଡ଼ ହେଉ, ଶିଷ୍ଟ ହେଉ ବା ଅଶିଷ୍ଟ ହେଉ, ବିବାଦର ଜାରଜୀୟ ଲୀଳା ଖେଳିଯାଏ । ସଦ୍‌ଭାବ ହେଉଛି ଦେବଦୁର୍ଲଭ ମାନବିକ ସଦ୍‌ଗୁଣ । ଏହାର ସୁଆଦ ଚାଖିବା ପାଇଁ ଦେବତା ବେଳେ-ବେଳେ ମାନବ ରୂପେ ଜନ୍ମ ନେଉଥାନ୍ତି । ଏହା ଫଳରେ ନିଜ ଉପରେ ବିଶ୍ୱାସ ରହେ, ପରସ୍ପର ମଧ୍ୟରେ ସ୍ନେହ ଓ ଅନ୍ୟ ଉପରେ ବିଶ୍ୱାସ ରହେ ।

ବର୍ତ୍ତମାନ ଆମେ ଦେଖିବା, ଆଧୁନିକ ଯୁଗରେ ସମସ୍ତ ବିଶ୍ୱରେ ତଥା ଆମ ଦେଶରେ ସଦ୍‌ଭାବ ପରିବର୍ତ୍ତେ ବିବାଦର ବୃଦ୍ଧି କିପରି ଘଟୁଛି । ବିଶ୍ୱର ସ୍ଥିତିକୁ ନେଇ ବିଚାର କଲେ ଦେଖାଯାଏ ଯେ ତୃତୀୟ ବିଶ୍ୱଯୁଦ୍ଧ ପାଇଁ ପ୍ରସ୍ତୁତି ସ୍ଥିରନିଶ୍ଚିତ । ଯୁଦ୍ଧମେଘାଚ୍ଛନ୍ନ ବିଶ୍ୱର

ଆକାଶରେ ବିଜୁଳି ଝଲକର କ୍ଷୀଣାଲୋକ ସଦୃଶ ଶାନ୍ତି ରକ୍ଷା ପାଇଁ ଉଦ୍ୟମ ହେଉଛି । ବିଶ୍ୱଦରବାରରେ ସଦ୍‌ଭାବ ଓ ବିବାଦର ବଳ କଷାକଷି ଚାଲିଛି । ଶାନ୍ତିପ୍ରିୟ ଭାରତବର୍ଷରେ ଅବସ୍ଥା ଅଧିକ ଶୋଚନୀୟ କହିଲେ ଚଳେ । ସାଂପ୍ରଦାୟିକ ବିବାଦ, ସନ୍ତ୍ରାସବାଦ ଓ ଦଳୀୟ ଦଙ୍ଗା ଆମ ଧନଜୀବନ ପ୍ରତି ଅନିଶ୍ଚିତ ଆଶଙ୍କା ସୃଷ୍ଟି କରୁଛି । ନରହତ୍ୟା ସମ୍ବାଦରେ ଆଜି ଆମେ ଏପରି ଅଭ୍ୟସ୍ତ ହୋଇଗଲୁଣି ଯେ ଏହା ଆମ ମନରେ ଶିହରଣ ଜାତ କରୁନାହିଁ । ରାଜ୍ୟ ସଭାରେ ପ୍ରକାଶିତ ବିବରଣୀରୁ ଜଣାଯାଏ ଯେ ୧୯୮୬ ମସିହାରେ ଆମ ଦେଶରେ ୮୮ଟି ବଡ଼ ଧରଣର ସାଂପ୍ରଦାୟିକ ସଂଘର୍ଷ ଘଟି ୧୮୪ରୁ ଊର୍ଦ୍ଧ୍ୱ ଲୋକଙ୍କର ମୃତ୍ୟୁ ଘଟିଛି ଏବଂ ୬ କୋଟି ୯୦ ଲକ୍ଷ ୨୮ ହଜାର ଟଙ୍କାର ସଂପତ୍ତି ନଷ୍ଟ ହୋଇଛି । ସାଂପ୍ରଦାୟିକ ଦଙ୍ଗାରେ ଗୁଜୁରାଟରେ ସର୍ବାଧିକ ୯୨ ଜଣ ଲୋକଙ୍କର ମୃତ୍ୟୁ ଘଟିଛି ଏବଂ ୩ କୋଟି ୨୩ ଲକ୍ଷ ଟଙ୍କାର ସଂପତ୍ତି ନଷ୍ଟ ହୋଇଛି । ଏହା ପଛକୁ ଉତ୍ତରପ୍ରଦେଶରେ ୩୬, କର୍ଣ୍ଣାଟକରେ ୨୦, ମହାରାଷ୍ଟ୍ରରେ ୧୬, ବିହାରରେ ୧୦ ଏବଂ ମଧ୍ୟପ୍ରଦେଶରେ ୮ ଜଣଙ୍କର ମୃତ୍ୟୁ ଘଟିଛି । ଅବଶ୍ୟ ୧୯୮୫ ମସିହାରେ ସାଂପ୍ରଦାୟିକ ଦଙ୍ଗା ହେତୁ ୨୫୨ ଜଣଙ୍କର ମୃତ୍ୟୁ ଘଟିଥିଲା । ୬ କୋଟି ଟଙ୍କାର ସଂପତ୍ତି ନଷ୍ଟ ହୋଇଥିଲା । ଏସବୁ ଫଳରେ ଆମ ଜାତୀୟ ସଂହତି, ଅଖଣ୍ଡତା ଓ ସ୍ୱାଧୀନତା ଘୋର ସଙ୍କଟର ସମ୍ମୁଖୀନ ହୋଇଅଛି । ଆମ ପ୍ରଗତି ଓ ସମୃଦ୍ଧି ଅନିଶ୍ଚିତ ଭାବରେ ବାଧାପ୍ରାପ୍ତ ହେଉଛି, ଏଥିରେ ସନ୍ଦେହ ନାହିଁ । ଆମର ଅଧିକାଂଶ ଶକ୍ତି, ଶ୍ରମ ଓ ସମ୍ବଳ ସଂଘର୍ଷ-ଜନିତ ଅଶାନ୍ତିକୁ ସୁଧାରିବାରେ ବ୍ୟୟ କରାଯାଉଛି । ଏସବୁର କାରଣ କଅଣ ହୋଇପାରେ ?

ସ୍ପଷ୍ଟତଃ କାରଣ କଦାପି ଗୋଟିଏ ନୁହେଁ । ଅନେକ କାରଣର ଯୁଗପତ୍ ପ୍ରୟୋଗ ଫଳରେ ଅବସ୍ଥା ଜଟିଳ ହୋଇପଡ଼ିଛି । ଆମ ନେତୃତ୍ୱ ପ୍ରତି ଯେପରି ମହାନ୍ ଆହ୍ୱାନ ଆସିଛି, ସାଧାରଣ ଜନ ଜୀବନ ପାଇଁ ସେହିପରି ନାହିଁନଥିବା ସଙ୍କଟ ଉପୁଜିଛି । ଆମ ସମାଜ ରଚନା ଏପରି ହୋଇଛି, ଯେଥିରେ ଆମକୁ ତର୍କିକଟା ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ପଡ଼ୁଛି । ମହାତ୍ମା ଗାନ୍ଧି ଶୋଷଣରହିତ ସହଯୋଗୀ ସମାଜର ଚିତ୍ର ଆମ ପାଇଁ ରଖିଯାଇଛନ୍ତି । ଯେଥିରେ ଯୋଗ, ଉଦ୍ୟୋଗ ଓ ସହଯୋଗର ସମାବେଶ ରହିବାର ଚିନ୍ତା ସେ କରିଥିଲେ । ଆମ ସମ୍ବିଧାନରେ ସମାଜବାଦୀ ରାଷ୍ଟ୍ରର ଲକ୍ଷ୍ୟ ସ୍ଥିର କରାଯାଇଛି । ଏହା ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ହେବାର କଥା । ଆଜି ଆମେ ଆମ ସମାଜର ଗତିବିଧି ସମ୍ବନ୍ଧରେ ଚିନ୍ତା କଲେ ଏହା ଗାନ୍ଧି ସମାଜତନ୍ତ୍ର ବା ସମ୍ବିଧାନର ସାମାଜିକ ଲକ୍ଷ୍ୟକୁ କଡ଼ାକଡ଼ି ଭାବରେ ଅନୁସରଣ କରୁଥିବାର ଜଣାପଡ଼େ ନାହିଁ । ମୋଟାମୋଟି ଭାବରେ ଆମ ସାମାଜିକ ସ୍ଥିତି ଗୋଳମାଳିଆ ହୋଇଯିବାରୁ କଙ୍କଡ଼ାକୁ ଗୋଳିପାଣି ସୁହାଇଲାପରି ବିଚ୍ଛିନ୍ନତା-ବାଦୀ ଶକ୍ତି ସେମାନଙ୍କ ପାଇଁ ସ୍ୱଚ୍ଛନ୍ଦ ଚାରଣଭୂମି ପାଇଯାଉଛନ୍ତି । ସମାଜରୂପକ ନାବର ମଙ୍ଗ ଓ ମଙ୍ଗୁଆଳ ସ୍ଥିର ଲକ୍ଷ୍ୟରେ ଚାଲୁ ନଥିବାରୁ ସାମାନ୍ୟ ଅଶାନ୍ତି ଓ ଅସ୍ଥିରତା (ଯାହାକି ଯେ କୌଣସି ଗତିଶୀଳ ପର୍ଯ୍ୟାୟରେ ସମ୍ଭବ) ଆମକୁ ଘୋର ବିପଦର ସମ୍ମୁଖୀନ କରୁଛି ।

ଏହା ଫଳରେ ଭାଷା, ଜାତି, ଧର୍ମ, ବର୍ଣ୍ଣ, ଅଞ୍ଚଳ ଆଦିର ବିଭେଦ ଆମ ସାଂସ୍କୃତିକ ଐକ୍ୟକୁ ମଜ୍ଜବୁତ, ଶକ୍ତିମନ୍ତ ଓ ସୁଦୃଢ଼ କରିବା ପରିବର୍ତ୍ତେ ଏସବୁ ଭିତ୍ତିରେ ସାଂପ୍ରଦାୟିକ ବିବାଦ ମୁଣ୍ଡ ଟେକୁଛି । ଯୁଗଯୁଗର ନୈତିକ ଓ ଆଧ୍ୟାତ୍ମିକ ଚିନ୍ତାଧାରା ଓ ମୂଲ୍ୟବୋଧ ପ୍ରତି ଆମ ମନ ସ୍ୱତଃ ଧାଉଁ ନାହିଁ, କିମ୍ବା କେହି ଆମ ମନରୂପକ ଘୋଡ଼ାକୁ ଚାବୁକ ଦେଇ ସେ ଆଡ଼କୁ ପ୍ରଧାବିତ କରିବାର ସୁସ୍ପଷ୍ଟ ପ୍ରୟାସ କରୁନାହାନ୍ତି । ସାଂପ୍ରଦାୟିକ ବିବାଦ ସହଜରେ ଗଣତାନ୍ତ୍ରିକ ଜୀବନର ପରିପନ୍ଥୀ ହୋଇଥିବା ସ୍ଥଳେ ସମ୍ମାନ, ସହନଶୀଳତା, ସଚ୍ଚୋଟ-ପଣିଆ ଆଦି ଗଣତାନ୍ତ୍ରିକ ମୂଲ୍ୟବୋଧଗୁଡ଼ିକର କ୍ରମପତନ ହେତୁ ସାଂପ୍ରଦାୟିକ ସଦ୍‌ଭାବ ସହିତ ଘାତପ୍ରତିଘାତର ସଂପର୍କ ସୃଷ୍ଟି କରନ୍ତି । ସଂଘର୍ଷ, ସୁବିଧା ସୁଯୋଗ ଓ ନ୍ୟସ୍ତ-ସ୍ୱାର୍ଥକୁ ଏକଚାଟିଆ ଅଧିକାରରେ ରଖି ତ୍ୟାଗ, ପରାର୍ଥପରତା, ଉଦାରତା ଓ ସେବାର ସ୍ଥାନ ସମାଜରେ ରହୁ ନାହିଁ । ଏପରି ସ୍ଥଳରେ ଭାଷା, ଧର୍ମ, ଗୋଷ୍ଠୀଜାତି, ଜାତିପ୍ରଥା ଆଦିକୁ ଭିତ୍ତିକରି ସଂକୀର୍ଣ୍ଣତା ବଢ଼ି ବଢ଼ି ଚାଲିଛି । ରାଜନୈତିକ କ୍ଷମତା ଭୋଗ କରୁଥିବା ଓ ଲାଭ କରିବାକୁ ପ୍ରୟାସୀ ବ୍ୟକ୍ତିବିଶେଷ ବା ଦଳ ଏକାଧାରରେ ସାଂପ୍ରଦାୟିକ ସଦ୍‌ଭାବର ପ୍ରଚାର କରୁଥିବା ସ୍ଥଳେ ନିଜ ସ୍ୱାର୍ଥ ସିଦ୍ଧି ପାଇଁ ସାଂପ୍ରଦାୟିକ ବିବାଦକୁ ଆୟୁଧ ରୂପେ ବ୍ୟବହାର କରୁଛନ୍ତି । ଉଚ୍ଚ, ନୀଚ, ଧନୀ, ଦରିଦ୍ର, ସବର୍ଣ୍ଣ, ଅସବର୍ଣ୍ଣ, ଧୋବଧାଉଳିଆ-ମଳିମୁଣ୍ଡିଆ, ଶିକ୍ଷିତ, ଅଶିକ୍ଷିତ, ସହରିଆ, ଗାଁଉଲିଆ, କୁହାଳିଆ, ଗୁଙ୍ଗା, ଚତୁର, ଗୁଆଁର, ସାଧୁ ଖଣ୍ଡ ଆଦି ବହୁବିଧ ଭାଗରେ ଓ ବିଭିନ୍ନ ମାତ୍ରାରେ ଆମ ସମାଜ ପ୍ରଶ୍ନାକୃତ ହୋଇଛି । ଏପରି ସ୍ଥଳରେ ମାରନେବେ ମହାପାତେ, ଚାହିଁଥିବ ଜଲକା ସହଜ ହେଉଛି । ପୁଣି ଶାସକଙ୍କ ପକ୍ଷରେ ନିଷ୍କାମ କର୍ମଯୋଗ କେବଳ ଗୀତାର ଅମୂଲ୍ୟବାଣୀ ହୋଇ ରହିଛି । କାର୍ଯ୍ୟତଃ ନାହିଁ କହିଲେ ଚଳେ । ସମତାର କ୍ଷୀଣ ରେଖା କେଉଁଠି କପରି ଦେଖାଯାଉଛି । କିନ୍ତୁ ସର୍ବତ୍ର ବିଷମତା ଜକଜକ ଉଜ୍ଜ୍ୱଳ ଦିଶୁଛି । ସ୍ୱାଧୀନ ଦେଶରେ ସୁବିଧା ସୁଯୋଗ ବଢ଼ୁଛି ଓ ସେ ଦିଗରେ ବହୁ ଆସ୍ଫାଳନ ମଧ୍ୟ କରାଯାଉଛି । ସେଥିଯୋଗୁଁ ଲୋକମାନଙ୍କ ଆକାଂକ୍ଷା ଏପରି ଅତିମାତ୍ରାରେ ବଢ଼ିଯାଉଛି ଯେ ତଦ୍ଦ୍ୱାରା ବିବାଦର ବୀଜ ବୁଣାଯାଉଛି । ଅତ୍ୟାଚାର ଓ ଅନୀତି ମଧ୍ୟ ବଢ଼ୁଛି । ପ୍ରତିଶୋଧପରାୟଣତା ସହଜରେ ଦଳୀୟ ସଂଘର୍ଷ ପାଇଁ ଇନ୍ଧନ ଯୋଗାଉଛି । ସାମାଜିକ ନ୍ୟାୟରୁ ବଞ୍ଚିତ ଲୋକ ବା ଅଞ୍ଚଳ ବୈଷମ୍ୟରେ ଜର୍ଜରିତ ହୋଇ ବିବାଦହିଁ ବଞ୍ଚିବାର ପନ୍ଥା ବୋଲି ଗ୍ରହଣ କରିନେଉଛନ୍ତି । ପଇସାର କରାମତି ନିକଟରେ ଲୋକଚରିତ୍ର ଓ ଅନ୍ୟବିଧ ପତ୍ରିକାସ୍ୱ ସ୍ୱୀକାର କରିଯାଉଛି । ପଇସା କ୍ୟା ନକରେ କାମ୍ ? ଆଜି ଏହାହିଁ ଦେଖିବାକୁ ପଡ଼ୁଛି । ମୁଦ୍ରାସ୍ଫୀତି ସାଙ୍ଗକୁ ଜନସଂଖ୍ୟା ବିସ୍ଫୋରଣ ଓ ଅବାଞ୍ଛିତ ସହରୀକରଣ ଯୋଗୁଁ ଲୁଟିଲୁଣ୍ଠନ, ଲହୁଲୁହାଣ ଓ ଲଢ଼େଇ ଅତି ମାମୁଲି କଥା ପରି ଜଣାପଡ଼ୁଛି । ଭୋଗବାଦୀ ଦୃଷ୍ଟିକୋଣ ଓ ବିଳାସର, ଚହଟ-ଚକ୍‌କଣ ରୂପ ଆମ ଆଖିକୁ ଝଲସାଇ ଦେଇଛି । ଏପରି କ୍ଷେତ୍ରରେ ସାଂସ୍କୃତିକ ପ୍ରସାର ଓ ପ୍ରୀତି ନାମରେ ଆମେ ଆମ ଅହଂକାରର ଢୋଲକୁ ଠାଉଁ ଠାଉଁ କରି ପିଟୁଛୁ । ଏହା ଦ୍ୱାରା ବାଦ, ବାଦାନୁବାଦ ଓ ବିବାଦ ହିଁ ସାର ହେଉଛି ।

ସମାଜତତ୍ତ୍ୱରେ ସଂପ୍ରଦାୟ ଏକ ସୁପରିଚିତ ଶବ୍ଦ ଓ ସାମାଜିକ ଜୀବନର ରହସ୍ୟ ଉଦ୍‌ଘାଟନ କରିବାରେ ଏହାର ଗୁରୁତ୍ୱ ବେଶି । କିନ୍ତୁ ସାଂପ୍ରଦାୟିକ ଓ ସାଂପ୍ରଦାୟିକତା ଅପାଂକ୍ତେୟ ଓ ଅଶେଷ ଅନିଷ୍ଟ ସାଧନର ଆବିଧପତ୍ର ହୋଇଛି । ବିଶେଷକରି ସଂହତି, ନିଃସ୍ୱାର୍ଥପରତା ଓ ସ୍ୱାଧୀନତାର ମୂଳରେ ଏହାର କୁଠାରଘାତ ଅତୀବ ମର୍ମନ୍ତୁଦ । ଏହି ପ୍ରସଙ୍ଗରେ ଏହା ଲକ୍ଷ୍ୟ କରିବାର କଥା ଯେ, ସାଂସ୍କୃତିକ ଜୀବନର ସଂପ୍ରସାରଣ ସମୟର ସ୍ରୋତରେ ସ୍ୱାଭାବିକ ଭାବରେ ଘଟିଛି । ଜନସଂଖ୍ୟାର ବୃଦ୍ଧି ତାକୁ ନିଜ ସ୍ଥାନରେ ଅଟକାଇ ପାରିନାହିଁ—ଅନ୍ୟତ୍ର ଯିବାକୁ ଦେଇଛି । ଧରାପୃଷ୍ଠରେ ନୂତନ ବସତି ପାଇଁ ସ୍ଥାନର ଆବିଷ୍କାର ତା ପାଇଁ ଅସୀମ ପ୍ରଲୋଭନ ହୋଇଛି । ଜ୍ଞାନର ପିପାସା ତାକୁ ଅସ୍ଥିର ଓ ଅସମ୍ଭାଳ କରିଛି । କିନ୍ତୁ ଏହି ସଂପ୍ରସାରଣ ଆଣିଦେଇଛି ବହୁବିଧ ସମସ୍ୟା । ନୂତନ ସ୍ଥାନରେ ନିଜକୁ ସାମିଲ କରିବା ହୋଇଛି ଅସଲ ସମସ୍ୟା । ଚିରାଚରିତ ସାଂସ୍କୃତିକ ଚଳଣିଗୁଡ଼ିକ ଜୀବନର ନୂତନ ସାମଞ୍ଜସ୍ୟ ପାଇଁ ଅକୁଳାଣ ହୋଇଛି । ତେଣୁ ତା'ର ସାଂସ୍କୃତିକ ସ୍ରୋତଟି ବହୁ ଶାଖାପ୍ରଶାଖାରେ ବିଭକ୍ତ ହୋଇଛି । ଇତିହାସ, ରାଜନୀତି, ଧର୍ମ, ସାହିତ୍ୟ, ଶିଳ୍ପ, ଶିକ୍ଷା, ଭାଷା, କୃଷି ଆଦି ଏହି ସବୁ ଶାଖାର କେତୋଟି ଦୃଷ୍ଟାନ୍ତ । ପୁନଶ୍ଚ ଏହିସବୁ ଶାଖା ଓ ପ୍ରଶାଖା ମଧ୍ୟରେ ସଙ୍ଗଠିତ ସମନ୍ୱୟ ଓ ତାଳମେଳ ରକ୍ଷା କରାଯାଇପାରିନାହିଁ । ଆନ୍ତରିକ ମଧ୍ୟ ସାଂସ୍କୃତିକ ସ୍ରୋତ ସହିତ ପରିପୂରକ ହୋଇ ରହିଲ ପାରିନାହିଁ । ଏହା ଫଳରେ ଏହି ସ୍ରୋତ ଚିରପ୍ରବହମାନ ହୋଇ ରହିପାରିନାହିଁ—ଅଟକି ଯାଇଛି ବା ଅବରୁଦ୍ଧ ହୋଇଛି । କାଠି କୁଟା ଆଦି କଚଡ଼ା ସୁଅକୁ ମାନ୍ଦା କରିଦେଇଛି । ଠେଲି ନେଇ ଆଗେଇ ଯିବାର ଶକ୍ତି ଦୁର୍ବଳ ହୋଇପଡ଼ିଛି । ସଂହତି ଓ ସଂସ୍କୃତି ହେଉଛି ସମବେତ ସ୍ପନ୍ଦନ । ଏହି ସ୍ପନ୍ଦନ ମାନ୍ଦା ଓ ମନ୍ଦ ହୋଇଯାଇଛି । ଏଥିରେ ମତର ପାର୍ଥକ୍ୟ ଦେଖାଦେଇଛି । ଅବଶ୍ୟ ପାର୍ଥକ୍ୟହିଁ ଗତିଶୀଳତାରେ ସ୍ୱାଭାବିକ ପ୍ରକ୍ରିୟା ଓ ଏହାଦ୍ୱାରା ସାଂସ୍କୃତିକ ସ୍ରୋତଟି ସମୃଦ୍ଧ ଓ ବୈଚିତ୍ର୍ୟପୂର୍ଣ୍ଣ ହୋଇଥାଏ । କିନ୍ତୁ ମତର ପାର୍ଥକ୍ୟ ଯେତେବେଳେ ସୀମା ଲଙ୍ଘନ କରି ମତାନ୍ଧତାରେ ପରିଣତ ହୁଏ, ସେତେବେଳେ ଉଲ୍ଲିଖିତ ଶାଖା ପ୍ରଶାଖାକୁ କେନ୍ଦ୍ର କରି ସଂପ୍ରଦାୟର ଉଦ୍ଭବ ହୁଏ । ସଙ୍କୀର୍ଣ୍ଣତା, କ୍ଷମତା ଓ ଅହମିକାର ଗଣ୍ଡି ଭିତରେ ଉତ୍କଟ ଆଞ୍ଚଳିକ ପ୍ରୀତି ପଶିଯାଇ ସାଙ୍ଘାତିକ ସାଂପ୍ରଦାୟିକ ମନୋଭାବ ଜାତ କରେ । ଜାତିଆଣ ଓ ବିଭେଦକାରୀ ବିଚ୍ଛିନ୍ନତାବାଦ ସେହିପରି ଭାବରେ ଜନ୍ମ ନିଏ । ଅନେକ ସମୟରେ ବିଜ୍ଞାପନମୂଳକ ଓ ଦାମ୍ଭିକତା-ସୂଚକ ସାଂସ୍କୃତିକ ପ୍ରଦର୍ଶନ ପଛରେ ଥାଏ ସାଂପ୍ରଦାୟିକ ମନୋଭାବ । ବିକାଶର ଆଡ଼ମ୍ବରପୂର୍ଣ୍ଣ ପ୍ରକ୍ରିୟାହେତୁ ସାଂପ୍ରଦାୟିକ ଦଙ୍ଗା ବିକାଶର ବିଳମ୍ବ ସାଧନ କରେ ଓ ବିନାଶର କାନ୍ତି-ସୌଧ ନିର୍ମାଣ କରେ । ଶୋଷଣ, ଉତ୍ପୀଡ଼ନ, ପ୍ରତିହିଂସା ଓ ପ୍ରତିଶୋଧ ରହିଯାଏ ପାଉଁଶର ପ୍ରଚ୍ଛନ୍ନତାରେ ଲୁଚିରହିଥିବା ଅଗ୍ନିକଣା ସଦୃଶ । ବାୟୁର ମୃଦୁମନ୍ଦ ସ୍ପର୍ଶରେ ଭୟାବହ ଅଗ୍ନିକାଣ୍ଡ ପରି ପ୍ରଜ୍ୱଳିତ ବହ୍ନିଶିଖା ସୃଷ୍ଟିକରେ । ସାଂପ୍ରଦାୟିକତା ଅପରିଣାମଦର୍ଶୀ ଓ ସ୍ୱାର୍ଥାନ୍ଧ ହୋଇପଡ଼େ । ସପତ୍ନୀର ବୈଧବ୍ୟ ଯନ୍ତ୍ରଣା ଦେଖିବାରେ

ଲାଳାୟିତା ରମଣୀ ଯେପରି ପତିଙ୍କର ନିଧନ କାମନା କରନ୍ତି, ସାଂପ୍ରଦାୟିକତା ବିବାଦର ପରିଣତି ସେହିପରି ହୁଏ । କୁଳବୁଡ଼ା ପରିବାରରେ କୁଳନନ୍ଦନର ଅସ୍ତିତ୍ୱ ରହେ କି ? ପରାର୍ଥପରାୟଣତା ଅଣିଦଏ ସଦ୍‌ଭାବ, ପ୍ରାଣୀମାନଙ୍କର ଆନନ୍ଦ, ମଙ୍ଗଳ ଓ ସଂହତି । କିନ୍ତୁ ସହନଶୀଳତାର ଅଭାବରୁ ଅନେକ ଦଳୀୟ ସଂଘର୍ଷ ଘଟି ଥିଲରୁ ତାଲ ହୋଇଯାଏ । ଉଚ୍ଚବାଚ ଓ ବଚସା ସାମାନ୍ୟ ସାମାନ୍ୟ ସମସ୍ୟାରେ ଭୀଷଣ ରୂପ ଧାରଣ କରେ । ଏହି ପ୍ରକ୍ରିୟାରେ ଅନେକ ସମୟରେ ସବର୍ଣ୍ଣ ହରିଜନ, ସଙ୍ଖ୍ୟାଗରିଷ୍ଠ ଥିଲିବାଲା ଆଦି ଲୋକମାନେ ଭାଗନେଇଯାନ୍ତି । ଶାନ୍ତିପୂର୍ଣ୍ଣ ସମାଧାନର ପନ୍ଥାରେ ବିଶ୍ୱାସ ଓ ଧୈର୍ଯ୍ୟ ରହେ ନାହିଁ । ଦଳ ଭିତରେ ଦଳ ହୋଇ ଦଳାଦଳି ବଢ଼ିଗଲେ ଓ ଦେଖିଲେ ଜଣକର କିମ୍ବା କେତେଜଣଙ୍କର ସ୍ୱାର୍ଥସାଧନ ହିଁ ମୁଖ୍ୟ ହୁଏ । ଦେଶ ବା ରାଷ୍ଟ୍ରର ହିତକୁ ଗୌଣକରି ଦିଆଯାଏ । ଜାତୀୟତା ଦ୍ୱାରାରେ ସଂକୀର୍ଣ୍ଣତା ବଢ଼ି ମହାଦେଶ, ଦେଶ, ରାଜ୍ୟ ଆଦି ଖଣ୍ଡବିଖଣ୍ଡିତ ହୋଇ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱର ଲୀଳାଭୂମି ହୋଇଯାଏ । ସେହି କାରଣରୁ ଜାତୀୟ ମମତା କ୍ରମେ ବିଶ୍ୱଜନ ପ୍ରୀତିରେ ପରିଣତ ହେବା ପାଇଁ ଉଦାରତା ଅବଲମ୍ବନ କରିବାକୁ ଆହ୍ୱାନ ଦିଆଯାଏ । ମାନବିକତା ଆଦି ଗଣତାନ୍ତ୍ରିକ ମୂଲ୍ୟବୋଧ ମୁଖ୍ୟତଃ ଜୀବନର ଆଚରଣ କ୍ରିୟା କରାଯାଏ । ରୂପ, ବର୍ଣ୍ଣ, ବେଶ, ବସତି, ଭାଷା, ଧର୍ମ ଆଦି ଦୃଷ୍ଟିରୁ ବିଶ୍ୱରେ ଯେପରି, ଆମ ଦେଶରେ ସେପରି ମାନବସମାଜ ବିଭିନ୍ନ ହେଲେହେଁ ଅଭେଦର ଭିତ୍ତିଟିଏ ଆମ ସମସ୍ତଙ୍କ ଅନ୍ତରରେ ରହିଛି । ସମସ୍ତଙ୍କୁ କୁହାଯାଇଛି, "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ" । ଏହାହିଁ ଏକତାର ଭିତ୍ତି, ସଂହତିର ସୂତ୍ର ।

ଅତଏବ ସାଂପ୍ରଦାୟିକତା ହେଉଛି ସଙ୍କୀର୍ଣ୍ଣ ସ୍ୱାର୍ଥସିଦ୍ଧିର ଆୟୁଧ । ଅର୍ଥନୀତିର ଅସମ ଅଭିବୃଦ୍ଧି ଆଞ୍ଚଳିକ ବୈଷମ୍ୟ ସୃଷ୍ଟି କରିଛି ଓ ଏହି ବୈଷମ୍ୟ ବିଭେଦ, ବିବାଦ, ବିଦ୍ୱେଷ ଓ ପ୍ରତିହିଂସା ଜାତ କରିଛି । ଏ ପ୍ରକାର ବ୍ୟକ୍ତି (ସମୂହ) ଓ ଅଞ୍ଚଳ ସହଜରେ ସାଂପ୍ରଦାୟିକତାର ଶରବ୍ୟ ହୋଇଛି । ବଂଶାନୁକ୍ରମିକ ଜାତିଆଣିଭେଦ ଧର୍ମବିଜ୍ଞାନ ଓ ପ୍ରାଣୀବିଜ୍ଞାନ ସମ୍ମତ ନୁହେଁ । ଆଧୁନିକ ସମାଜ ଏହାର ପ୍ରତ୍ୟାଖ୍ୟାନ କରେ ତଥାପି ଏହାର ଅସ୍ତିତ୍ୱକୁ ବଜାୟ ରଖିବା ପାଇଁ ସମ୍ପ୍ରଦାୟ ଓ ସାଂପ୍ରଦାୟିକତା ଆଶ୍ରୟରେ ଜାତିପ୍ରଥା ନିଜର ଶେଷ ସଂଗ୍ରାମ ଜାରିର ରଖିଛି । ଅସହନଶୀଳତା ଓ ଅହମିକା ମଧ୍ୟ ସାଂପ୍ରଦାୟିକତାକୁ ପ୍ରଶ୍ରୟ ଦେଇଛି । "ମୁଁ ବଡ଼, ମୋ ତୁଳନାରେ ଅନ୍ୟମାନେ ହୀନ ଓ ସାନ, ତେଣୁ ମୁଁ ସେମାନଙ୍କ ଉପରେ ମୋର କ୍ଷମତା, କର୍ତ୍ତୃତ୍ୱ ଓ ପ୍ରାଧିକାର ଚିରକାଳ ପାଇଁ ଜାରିର ରଖିବି ।"—ଏ ପ୍ରକାର ମନୋଭାବ ସାଂପ୍ରଦାୟିକ ବିବାଦରେ ପରିଣତ ହୋଇଛି । ଏହାର ଗୋଟିଏ ଦିଗ ହେଉଛି ରଜାରାଜୁଡ଼ା ମନୋଭାବ । ରାଜାମହାରାଜା ତ ଆଉ ନାହାନ୍ତି, କିନ୍ତୁ ଏହି ଅବାଞ୍ଛିତ ଓ ଭ୍ରାନ୍ତ ମନୋଭାବ ଅନେକେ ଛାଡ଼ି ନାହାନ୍ତି । ଅମଲାତାନ୍ତ୍ରିକ ଶାସନ ଏହାର ଅନ୍ୟ ଏକ ଦିଗ । ଦଳୀୟ ସଂଘର୍ଷ ଏ ସବୁର ପରିଣତି ।

ମତାନ୍ଧତା ଆଧୁନିକ ସମାଜର ଲକ୍ଷଣ କହିଲେ ଚଳେ । ଏହା ସବୁ ଯୁଗରେ ଅଛି ।

କିନ୍ତୁ ଆଜିକାଲି ଗଣତାନ୍ତ୍ରିକ ଓ ବୈଜ୍ଞାନିକ ମନୋଭାବ ବିରୁଦ୍ଧରେ ଏହାର ବହିର୍ଗତହେବାର ପ୍ରାଣମୂର୍ଚ୍ଛା । ପରାଜିତ ପରାକ୍ରମ ଅତି ପ୍ରବଳ ହୋଇଅଛି । ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଅନେକ ସଂଘର୍ଷ ଏହି କାରଣରୁ ଘଟୁଛି । ଏହା ମଧ୍ୟ ସାମାଜିକ ପ୍ରଗତି ଓ ପରିବର୍ତ୍ତନର ପରିପନ୍ଥୀ ହୋଇଛି । ଜାତୀୟ ସ୍ତରରେ ମତାନ୍ଧତା ରାଷ୍ଟ୍ରୀୟ ଭାବନାକୁ ଏପରି ସଙ୍କୁଚିତ ଓ ସଙ୍କୀର୍ଣ୍ଣ କରିଦିଏ ଯେ ଏହା ବିଶ୍ୱଭାବନାର ପରିପନ୍ଥୀ ହୁଏ । ଉଗ୍ର ଜାତୀୟତା ଠିକ୍ ସେହିପରି ମତାନ୍ଧତା ଯୋଗୁଁ ଆଞ୍ଚଳିକ ଗୌରବ ରାଷ୍ଟ୍ରୀୟ ଭାବନାର ପ୍ରତିଦ୍ୱନ୍ଦ୍ୱୀ ହୋଇ ରାଷ୍ଟ୍ରୀୟ ମର୍ଯ୍ୟାଦାକୁ କ୍ଷୁଣ୍ଣ ଓ ଖର୍ବ କରେ । ବିଭିନ୍ନ ଅଞ୍ଚଳର ଚାରୁକଳା, ନୃତ୍ୟ, ଗୀତ, ଭାଷା, ସାହିତ୍ୟ, ଶିଳ୍ପ, ସ୍ଥାପତ୍ୟ ଆଦି ରତ୍ନଗର୍ଭା ମହାସମୁଦ୍ରରେ ପରିଣତ ନ ହୋଇ ପଙ୍କିଳ ଜଳାଶୟ ହୋଇ ରହେ । ମତାନ୍ଧତା ପରି ଧର୍ମାନ୍ଧତା ଭାରତ ତଥା ବିଶ୍ୱ ଇତିହାସରେ କଳଙ୍କିତ ଅଧ୍ୟାୟ ଆରମ୍ଭ କରିଛି । ମତାନ୍ଧତା ମଧ୍ୟ ଧର୍ମାନ୍ଧତାର କାରଣ ହୋଇଛି । "ଧର୍ମେ ଧାରଣେ ଧରଣୀ" ସବୁ ଯୁଗରେ ରହିଛି । ମନୁଷ୍ୟ ସହିତ ମନୁଷ୍ୟର, ମନୁଷ୍ୟ ସହିତ ସମାଜର ଓ ସାମାଜିକ ମନୁଷ୍ୟର ବିଶ୍ୱ ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରାଯାଇଛି ଧାର୍ମିକ ଚେତନାଦ୍ୱାରା । ଧର୍ମାତ୍ମା ବ୍ୟକ୍ତିର ଆତ୍ମା ଓ ଆଚରଣରେ ଥାଏ ଭ୍ରାତୃତ୍ୱ, ସଦ୍‌ଭାବ ଓ ଏକତା । ଏହାହିଁ ସୃଷ୍ଟିର ସ୍ୱଧର୍ମ । ସର୍ବ ଜୀବନର ସ୍ରଷ୍ଟା ଏକ ଓ ଅଭିନ୍ନ । ଧର୍ମ ପାଳନର ରୂପରେଖ, ବହିରାବରଣ ଓ ବହିଃପ୍ରକାଶ ଭିନ୍ନଭିନ୍ନ ହୋଇପାରେ; କିନ୍ତୁ ହୃଦୟର ସ୍ପନ୍ଦନ ସବୁ ସମସ୍ତଙ୍କର ସମାନ । ମନ୍ଦିର, ମସ୍‌ଜିଦ୍, ଗିର୍ଜା ଆଦିରେ ପୂଜକର ଭାଷା, ଭଙ୍ଗୀ, ଚଳଣି ଓ ଚରିତ୍ର ଭିନ୍ନ ଭିନ୍ନ ହେଲେହେଁ ପୂଜ୍ୟ ହୋଇଛନ୍ତି ଏକ । ଆମେ ସେହି ଭାଷା, ଭଙ୍ଗୀ, ଚଳଣି ଓ ଚରିତ୍ରରେ ଅନ୍ଧ ହୋଇ ସେହି ପୂଜ୍ୟଙ୍କୁ ଭିନ୍ନ ଭାବରେ ଦେଖୁଛୁଁ । ସର୍ବସ୍ରଷ୍ଟା ଉପାସ୍ୟ ହେଉଛନ୍ତି ଏକ । ଏହି ସତ୍ୟଟିକୁ ଉପଲବ୍ଧି କରିପାରିଲେ ଏହାର ସ୍ପଷ୍ଟ ରୂପେ ଆମେ ଦେଖିବାକୁ ପାଆନ୍ତେ ମହାତ୍ମା ଗାନ୍ଧିଙ୍କ ଭାଷାରେ "ଈଶ୍ୱର ଆଲ୍ଲା ତେରେ ନାମ, ସବ୍‌କୋ ସନ୍‌ମତି ଦେ ଭଗବାନ ।" ଧର୍ମ ଓ ଧାର୍ମିକ ସମସ୍ତଙ୍କ ହୃଦୟରେ ସଞ୍ଚାର କରନ୍ତୁ ସଦ୍‌ଭାବ, ସନ୍ମତି, ସଦ୍‌ବୁଦ୍ଧି ଓ ସଦିଚ୍ଛା ।

ସାରା ବିଶ୍ୱରେ ମତାନ୍ଧତା ଓ ଧର୍ମାନ୍ଧତା ଯୋଗୁଁ ବହୁ ଶକ୍ତିଶାଳୀ ସାମ୍ରାଜ୍ୟର ପତନ ଘଟିଛି । ଭାରତରେ ଏହି ଉଦାହରଣ କମ୍ ନୁହେଁ । ସମ୍ରାଟ ଆକବର ମୋଗଲ ହେଲେ ହେଁ ଉଦାରତା, ସହନଶୀଳତା, ସମତା ଓ ସମ୍ମାନର ଦୃଷ୍ଟାନ୍ତ ଉପସ୍ଥାପନ କରି ଅମର ହୋଇଛନ୍ତି । ସର୍ବ ଧର୍ମର ସମନ୍ୱୟ ରୂପେ ସେ "ଦୀନଇଲାହି" ନାମକ ଧାର୍ମିକ ବିଶ୍ୱର ପ୍ରବର୍ତ୍ତନ କରିଥିଲେ । ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସାଂପ୍ରଦାୟିକ ବିବାଦ ଉତ୍କଟ ହୋଇଥିଲା । ଆମ ଦେଶର ବିଭକ୍ତୀକରଣ ହେଉଛି ଏହାର । ପରିଣତି । ସେତେବେଳେ ଓ ଏହା ପୂର୍ବରୁ ଏହି ଦୁଇ ସମ୍ପ୍ରଦାୟର ଏକତା ପାଇଁ ବହୁ ଉଦ୍ୟମ କରାଯାଇଛି । ଏ ସମ୍ପର୍କରେ Sayyid Ahmed Khan (1887)ଙ୍କ ଉକ୍ତି ସ୍ମରଣୀୟ !

Do you not inhabit the same land ? Are you not burned and buried on the same soil ? Do you not tread the same ground and live upon the same soil ? Remember that the words Hindu and Mohammedan are only meant for religious distinction—otherwise all persons whether Hindu or Mohammedans even the Christian who reside in this country, are all in this particular respect belonging to one and the same nation. Then all these different sects can be described as one nation. They must each and all unite for the good of the country which is common to all.

ଧର୍ମାନ୍ଧତା, ଆତ୍ମବଞ୍ଚନା ଓ ମତାନ୍ଧତାଜନିତ ସାଂପ୍ରଦାୟିକତାକୁ ଏକାତ୍ମତା ବଳରେ ଭିଙ୍ଗିଦିଆଯାଇପାରେ । କବୀର, ନାନକ, ତୁକାରାମ, ରାମଦେଓ ପ୍ରଭୃତି ସନ୍ଥମାନେ ଏକ ଉଚ୍ଚ ଆଧ୍ୟାତ୍ମିକ ଓ ନୈତିକ ପରଂପରା ସୃଷ୍ଟି କରି ମାନବତାର ପ୍ରେମରଜ୍ଜୁରେ ମାନବ-ସମାଜକୁ ଆବଦ୍ଧ କରିଛନ୍ତି । କବୀରଙ୍କ ବାଣୀ ହେଉଛି :

"ହିନ୍ଦୁ କହେ ରାମ ମୋହି ପ୍ୟାରା ତୁରକ୍ କହେ ରହିମାନା
ଆପସ ମେଁ ଦୋ ଲରିଲରି ମଏ ମରମ୍ ନ କାହୁ ଜାନା" ।

ଅର୍ଥାତ୍ ରାମ ହିନ୍ଦୁଙ୍କର ପ୍ରିୟ ପ୍ରଭୁ ବୋଲି ସେମାନେ କହୁଛନ୍ତି, ମୁସଲମାନ କହୁଛନ୍ତି ରହିମ୍ । କିନ୍ତୁ କେହି ପ୍ରଭୁ ପରମାତ୍ମାଙ୍କର ଗୂଢ଼ ମର୍ମ ନଜାଣି ନିଜ ନିଜ ମଧ୍ୟରେ ଲଢ଼ି ଲଢ଼ି ମରୁଛନ୍ତି । ସେ ଏହାର ସମାଧାନରେ ଅନ୍ୟ ଏକ ଦୋହା ଲେଖିଛନ୍ତି ଓ ଏହାର ଅର୍ଥ ହେଉଛି—"ପ୍ରେମର ରାସ୍ତା ଏତେ ସଙ୍କୀର୍ଣ୍ଣ ଯେ ଏଥିରେ ଦୁଇଜଣଲୋକ ଏକାବେଳେକେ ଚାଲିପାରିବେ ନାହିଁ । ନିଜର ଅହଂକୁ ବିନାଶକରି ଯେତେବେଳେ ମାନବ ନିଜକୁ ପ୍ରଭୁଙ୍କ ଶ୍ରୀଚରଣତଳେ ସମର୍ପଣ କରିଦେବ, ସେତେବେଳେ ତାକୁ ରାସ୍ତା ଦେଖାଯିବ ।" ଏହି ପ୍ରେମ ପାଇବା ପାଇଁ କବୀରଙ୍କ ଭାଷା ହେଉଛି :

"ପ୍ରେମ ନବାଡ଼ୀ ଉପଜେ ପ୍ରେମ ନ ହାଟ ବିକାୟ
ରାଜା-ପରଜା ଜହିରୁଚେ ସାସ ଦେୟି ଲେ ଜାୟ ।"

ଅର୍ଥାତ୍ ପ୍ରେମ ବାଡ଼ିରେ ଫଳେ ନାହିଁ । ହାଟରେ ବିକାହୁଏ ନାହିଁ । ରାଜା ପରଜା ଯାହାକୁ ଯେପରି ରୁଚେ ନିଜର ମୁଣ୍ଡ ଦେଇ କିଣି ନେଇଯିବ । ପ୍ରଭୁର ପ୍ରେମଭକ୍ତି ଲଭପାଇଁ ସାଧକର ଆତ୍ମସମର୍ପଣ ଆବଶ୍ୟକ । ଏହା ସହଜଲଭ୍ୟ ପଣ୍ୟଦ୍ରବ୍ୟ ସଦୃଶ ନୁହେଁ । ଆତ୍ମ ସମର୍ପଣଦ୍ୱାରା ହୃଦୟ ଅନାବିଳ ହୁଏ । ସ୍ୱଚ୍ଛ ହୃଦୟରେ ସଦ୍‌ଭାବ ଫୁଟିଉଠେ । ସେଥିରୁ ଏକତା ଓ ଏକାତ୍ମତା ଆସେ । ବିଦ୍ୱେଷ ଓ ବିବାଦ ଆପେ ଆପେ ଅପସରି ଯାଏ । ମହାତ୍ମାଗାନ୍ଧି ତାଙ୍କ ସ୍ୱପ୍ନର ଭାରତରେ ଐକ୍ୟବଦ୍ଧ ଭାରତୀୟ ସମାଜର ଚିନ୍ତା କରିଥିଲେ ।

କୌଣସି ସାଂପ୍ରଦାୟିକ ବିବାଦ ରହିବ ନାହିଁ । ଅସ୍ପୃଶ୍ୟତାର କଳଙ୍କ ସମୂଳେ ଲୋପ ପାଇବ । ସମାଜରେ ନାରୀମାନଙ୍କ ମର୍ଯ୍ୟାଦା ବୃଦ୍ଧି ପାଇବ । ଗାନ୍ଧିଜୀଙ୍କ ନିଜ ଭାଷା ହେଉଛି—

"I shall work for an India in which the poorest shall feel that it is their country in whose making they have an effective voice; an India in which there shall be no high class and low class of people; an India in which all communities shall live in perfect harmony. There can be no room in such an India for the curse of untouchability······ women will enjoy the same rights as men···This is the India of my dreams."

ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ସତ୍ୟ ହୋଇଛି କି ? ସୀମାନ୍ତଗାନ୍ଧି ଖାଁ ଅବଦୁଲ୍ ଗଫୁରଖାଁ ଶତାୟୁ ହୋଇ ମୃତ୍ୟୁବରଣ କରିଛନ୍ତି । ସେ ଯୌବନର ଅପରାହ୍ଣରେ ଜାତିର ଜନକ ମହାତ୍ମାଗାନ୍ଧିଙ୍କ ପଦତଳେ ତାଙ୍କ ସ୍ୱପ୍ନର ଭାରତକୁ ସତ୍ୟ କରିବାପାଇଁ ଶପଥ ନେଇଥିଲେ । ବମ୍ବେଠାରେ ରୋଗଶଯ୍ୟାରେ ରହି ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧିଙ୍କ ଶୁଭାଗମନରେ ନିଜର ପୁଞ୍ଜୀଭୂତ ଭାବରାଶି ପ୍ରକାଶ କରିଛନ୍ତି—"ମୁଁ ଏକ ଭିନ୍ନ ଭାରତର ସ୍ୱପ୍ନ ଦେଖିଥିଲି । ସେ ଭାରତ ଆଜିର ଭାରତ ନୁହେଁ । ସାଂପ୍ରଦାୟିକ ସଦ୍‌ଭାବ ଓ ଭ୍ରାତୃ ମମତାରେ ଉଜ୍ଜୀବିତ ଏକ ଅଖଣ୍ଡ ଭାରତ । ହିଂସା, ଦୁର୍ନୀତି ଓ ଅପକର୍ମ ଯେଉଁଠି କେବଳ ପୁସ୍ତକର ଶବ୍ଦ ବିନ୍ୟାସ ମଧ୍ୟରେ ସୀମିତ—ମୁଁ ସେହିଭଳି ଏକ ଭାରତର ଚିନ୍ତା କରିଥିଲି ।" ସେ ମଧ୍ୟ କହିଛନ୍ତି— "ଅହିଂସା ଓ ସତ୍‌ମାର୍ଗରେ ବିଶ୍ୱାସବୃଦ୍ଧି ଏବେ ମଧ୍ୟ ସରଳ ଜୀବନ ଯାପନର ଯଥେଷ୍ଟ ଆବଶ୍ୟକତା ରହିଛି । କ୍ଷମତା ପଛରେ ପାଗଳପରି ନ ଗୋଡ଼ାଇ ଆପୋଷ ମିଳାମିଶା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଜରିଆରେ ଏକ ନୂତନ ବିଶ୍ୱ ଗଠନ କରାଯାଇ ପାରିବ ।" ଏହାହିଁ ଭାରତର ଘୋଷିତ ଜାତୀୟ ନୀତି । କିନ୍ତୁ ଆମ କଥା ଓ କାମ ଏହି ନୀତିରେ ଏକ ଓ ଅଟଳ ରହିବା ଉଚିତ । ଆଚରଣ ଓ ଅନ୍ତଃକରଣକୁ ଏକ କରିବା ଗାନ୍ଧି ବିଚାରର କଷ୍ଟି ପଥର । ଆମେ ପ୍ରତ୍ୟେକ ନାଗରିକ ଏହି କଷ୍ଟି ପଥରରେ ପ୍ରତି ମୁହୂର୍ତ୍ତର ଜୀବନକୁ କଷିବା ଉଚିତ ।

ଏଯାଏଁ ଗାଁଗହଳର ଲୋକେ ଅନେକାଂଶରେ ଏହି ପ୍ରତିଜ୍ଞା ପାଳନରେ ଏକନିଷ୍ଠ ରହିଛନ୍ତି । ଶହ ଶହ ବର୍ଷ ଧରି ବିଭିନ୍ନ ସମ୍ପ୍ରଦାୟ, ଗୋଷ୍ଠୀ ଓ ମତବାଦର ଲୋକ ଏକଜ ସମାଜରେ ଆବଦ୍ଧରହି ନିଜ ମଧ୍ୟରେ ସ୍ନେହ, ମୈତ୍ରୀ ଓ ପ୍ରୀତିର ସମ୍ପର୍କକୁ ଅତୁଟ ରଖିଛନ୍ତି । ମନୁଷ୍ୟମାନେ ସ୍ନେହାନୁରାଗୀ । ପାରିବାରିକ, ସାମାଜିକ, ଜାତୀୟ ତଥା ବିଶ୍ୱଜୀବନରେ ସ୍ନେହର ଅନାବିଳ ସମ୍ପର୍କ ସମସ୍ତ ବିଭିନ୍ନତା, ବିରୋଧ ଓ ବିଚ୍ଛିନ୍ନତାକୁ ଏକଜ କରିଛି । ଏହାହିଁ ମାନବିକତା । ଜାତୀୟ ସ୍ତରରେ ଆମ ସଂହତି । ସାମାଜିକ ଜୀବନରେ ଐକ୍ୟ ଓ ଏକାତ୍ମତା ।

ପାରିବାରିକ ଜୀବନରେ ଦେବଦୁର୍ଲଭ ମନ୍ଦାକିନୀ ଧାରା । କିନ୍ତୁ ବିଭିନ୍ନତା ହେତୁ ବେଳେବେଳେ ସଦ୍‌ଭାବ ପରିବର୍ତ୍ତେ ବିବାଦ ଘଟିବା ବିଚିତ୍ର ନୁହେଁ । କିନ୍ତୁ ବିଭିନ୍ନତାର ମାତ୍ରାଧିକ୍ୟ ହେତୁ ଓ ଏହାର ପ୍ରକାର ବଢ଼ୁଥିବାରୁ ସଂଘର୍ଷ ଅଧିକରୁ ଅଧିକ ହେଉଛି । ଏହା କ୍ରମେ ଅଧିକ ଭୟାବହ ହେଉଛି । କ୍ଷମତାର ଲିପ୍‌ସା, ଅସୁସ୍ଥ ପ୍ରତିଯୋଗିତା, ସ୍ୱାର୍ଥାନ୍ଧତା ଓ ସଂକୀର୍ଣ୍ଣତା ଦିନକୁଦିନ ଏହି ସଂଘର୍ଷର ପରିବେଶକୁ ବିଷମୟ, ଜଟିଳ ଓ କଳୁଷିତ କରୁଛି ।

ଅତଏବ ଏହି ମାରାତ୍ମକ ଦୁର୍ଗତିପାଇଁ କୌଣସି ଚଟ୍‌ଜଲ୍‌ଦି ଗୁଳିକା କରି ଜାତୀୟ ପ୍ରାଣ ରକ୍ଷା କରିବା ସମ୍ଭବ ନୁହେଁ । ଏଥିପାଇଁ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗରେ ଅକ୍ଳାନ୍ତ ଉଦ୍ୟମ କରିବାକୁ ହେବ । ପରିବାର ଓ ପାଠଶାଳାର ସହଯୋଗିତାରେ ବାଲ୍ୟଜୀବନକୁ ସୁନ୍ଦର, ସୁରୁଚିସମ୍ପନ୍ନ ଓ ସୁନିୟନ୍ତ୍ରିତ କରାଯିବ । ସମସ୍ତଙ୍କ ହୃଦୟରେ ସଦ୍‌ଭାବର ବୀଜ ବପନ କରାଯିବ । ସଂଗଠିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ ସୃଷ୍ଟି କରି ସହଯୋଗ ଓ ସମବାୟକୁ ଜୀବନ ଯାପନ ପ୍ରଣାଳୀରେ ପରିଣତ କରିବାକୁ ହେବ । ଜାତି, ଧର୍ମ ଓ ସମ୍ପ୍ରଦାୟ ସୂଚକ ଉପାଧି ଓ ସଂଜ୍ଞା ନାମ ସହିତ ସଂଯୁକ୍ତ କରାନଗଲେ ଭଲ । ବସ୍ତୁତଃ ସାଂପ୍ରଦାୟିକତା ବିରୁଦ୍ଧରେ ସଂଗ୍ରାମ ସାଂପ୍ରଦାୟିକ ବ୍ୟକ୍ତିମାନଙ୍କଦ୍ୱାରା କରାଯାଇ ପାରିବନାହିଁ—ଧର୍ମନିରପେକ୍ଷ ନେତୃବର୍ଗ ଗଣତାନ୍ତ୍ରିକ ପଦ୍ଧତିରେ ଏହା କରିପାରିବେ । ଶିକ୍ଷାର ପ୍ରସାରଦ୍ୱାରା ଜ୍ଞାନାଲୋକ ହିଁ ଅନ୍ଧକାର, ଅହଙ୍କାର ଓ ଅଜ୍ଞତା ଦୂରକରିପାରିବ । ମାନବିକତା ଆଧାରିତ ପୁନର୍ଗଠନର ଧାରାବାହିକ ବସ୍ତୁନିଷ୍ଠଭାବରେ ଇତିହାସର ପୁନଃ ମୂଲ୍ୟାୟନ କରାଯିବ ।

ଅର୍ଥନୈତିକ ପ୍ରଗତିପାଇଁ ବିକାଶର ବନ୍ୟା ଦେଶବ୍ୟାପୀ ହେବ । ମାନବଜୀବନର ସମସ୍ତ ବିଭାବକୁ ଏହି ବିକାଶ ଆଧାରିତ କରିବ । କାରଣତଃ ଦାରିଦ୍ର୍ୟ ହିଁ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଘୃଣା ଜାତକରେ । ଘୃଣା କ୍ରମେ ସାଂପ୍ରଦାୟିକତାରେ ପରିଣତ ହୁଏ । ବିଚ୍ଛିନ୍ନତାବାଦ ଓ ଗୋଷ୍ଠୀବିବାଦ ଏଥିରୁ ଉପୁଜେ । ତେଣୁ ବିକାଶର ଧାରାକୁ ସଂକୀର୍ଣ୍ଣ ରାଜନୀତିରୁ ମୁକ୍ତକରି ସମସ୍ତଙ୍କପାଇଁ ଉନ୍ମୁକ୍ତ ରଖାଯିବ । ଏଥିରେ ଗୋଷ୍ଠୀ ବିବାଦ, ଆଧିପତ୍ୟ ଓ ପ୍ରୌଢ଼ିର ସ୍ଥାନ ରହିବନାହିଁ । ଆଞ୍ଚଳିକ ବୈଷମ୍ୟ ଦୂରୀକରଣକୁ ଅଗ୍ରାଧିକାର ଦିଆଯିବ ।

ଅସ୍ତ୍ରଶସ୍ତ୍ରଦ୍ୱାରା ସାଂପ୍ରଦାୟିକତା ଦୂର କରି ହେବନାହିଁ । ହିଂସାରୁ ହିଂସା ଜାତହୁଏ । ତେଣୁ ସାଂପ୍ରଦାୟିକତା ବିରୋଧୀ ଆନ୍ଦୋଳନ ସଂପୂର୍ଣ୍ଣରୂପେ ଅହିଂସ ହେବ । ମୈତ୍ରୀ, ବନ୍ଧୁତା ଓ ପ୍ରୀତିସମ୍ଭାର କରିବାକୁ ହେବ । ଗଣତାନ୍ତ୍ରିକ ସହିଷ୍ଣୁତାର ବାୟୁମଣ୍ଡଳରେ ମାନବିକ ସହାବସ୍ଥାନ ସମ୍ଭବ । ଯେଉଁସବୁ ସାମାଜିକ, ଜାତିଗତ ଓ ଧର୍ମୀୟ କାରଣରୁ ବିବାଦର ସୃଷ୍ଟି ହେଉଛି, ଏଥିପ୍ରତି ସର୍ବାଦୌ ଦୃଷ୍ଟି ଦେବାକୁ ପଡ଼ିବ ।

---

# ସାଂପ୍ରଦାୟିକତା ବିରୁଦ୍ଧରେ ଶିକ୍ଷକ

ଆମେ ଯେଉଁ ଶିକ୍ଷକ । ମୁଁ ବି ତନ୍ମଧ୍ୟରୁ ଜଣେ । ଶିକ୍ଷକ ହୋଇଛୁ, ଆଜି ବି ଅଛୁ ଓ ଶେଷ ପର୍ଯ୍ୟନ୍ତ ଶିକ୍ଷକ ହୋଇ ରହିବାର ଆଶା ରହିଛୁ । ଫରକ କେଉଁଠି ? କେତେବେଳେ ଶ୍ରେଣୀ କୋଠରି ମଧ୍ୟରେ, ଆଉ କେତେବେଳେ ଧରାବନ୍ଧା ଶ୍ରେଣୀର ବାହାରେ । କେତେ-ବେଳେ ପୁରୁଣାକାଳିଆ ଶିଶୁ ଶ୍ରେଣୀର ପିଲାଙ୍କୁ, ଆଉ କେତେବେଳେ ଆଜିକାଲିର ୩ରୁ ୫ ବର୍ଷ ବୟସର ଛିକି ଛିକି ପିଲାଙ୍କୁ, ଆହୁରିମଧ୍ୟ କଲେଜ, ଟ୍ରେନିଂ କଲେଜ, ପ୍ରାଥମିକ, ମାଧ୍ୟମିକ, ଉଚ୍ଚତର ଶ୍ରେଣୀର ଶିକ୍ଷାର୍ଥୀଙ୍କୁ ପଢ଼ାଇବାର ସୁଯୋଗ ପାଇଛୁ । ଆନନ୍ଦ ମିଳିଛୁ । ଶିକ୍ଷାର ସବୁ ସ୍ତରରେ ପଢ଼ିବା, ପଢ଼ାଇବା, ଶିଖିବା ଓ ଶିକ୍ଷାଦେବା ଜୁଟିଯାଇଛୁ ।

ମୁଁ ପଢ଼ାଇଛୁ । ମୋ ଭଳି ଧରାବନ୍ଧା ଶିକ୍ଷକଙ୍କୁ ଗୁରୁ ବା ସେମାନଙ୍କ ସହିତ ଅନ୍ୟମାନେ ପଢ଼ାଉଥିବାର ଦେଖିଛୁ, ଆବଶ୍ୟକତା ଅନୁଭବ କରିଛୁ ଓ କରୁଛୁ । ଏହି ସୁଯୋଗ ମୋତେ ଆମ ସମାଜ ଦେଇଛୁ । ସମାଜ ପ୍ରତି ଋଣ ଶୁଝି ହେବନାହିଁ । ଆଉ ପାଇଲି କଅଣ ? ଶିକ୍ଷା ମୋର ଧର୍ମ ଓ କର୍ମ । ଶିକ୍ଷାସ୍ପନ୍ଦନରେ ମୋର ଜୀବନ ଓ ଜୀବିକା । ସେଠି ମୋର ସାଧନା ଓ ସାଧ । ଶିକ୍ଷାର୍ଥୀମାନେ ମୋର ଗୁରୁ ଓ ଶିଷ୍ୟ । ଅବଧୂତଙ୍କର ଗୁରୁ ହେଉଛନ୍ତି ଶିଶୁ । ଭାଗବତରେ ଅଛି, "ଶିଶୁର ନାହିଁ ପରାପର, ସକଳ ଦେଖଇ ଈଶ୍ୱର ।" ଆମ ସମାଜର ଗୁରୁ ହେଉଛନ୍ତି ଅବଧୂତ ଓ ତାଙ୍କର ଚବିଶ ଗୁରୁ ମଧ୍ୟରୁ ଶିଶୁ ଜଣେ । ବାଛ-ବାସନ୍ଦ ବସ୍ତୁର ବିବର୍ଜିତ ଯେ ଶିଶୁ । ନିର୍ବିକାର ଯେ । ନିଜସ୍ୱତାରେ ସେ ଅନନ୍ୟ, କିନ୍ତୁ ଆଶା, ଆକାଙ୍‌କ୍ଷାରେ ଯେ ମନୁଷ୍ୟ ପରି ମନୁଷ୍ୟ ହେବ । ସେ ହସିବ, ସେ କାନ୍ଦିବ, କେବଳ ନିଜ ପାଇଁ ନୁହେଁ, ଅନ୍ୟ ପାଇଁ ମଧ୍ୟ । ଏହି ଦୀକ୍ଷାଟି ମୁଁ ଘେନିଲି କି ? ଆମେ ନେଲୁକି ?

ଢୋଲିଆ ଢୋଲ ପିଟେ, ପେଟ ପୋଷେ, ଆମକୁ ଆନନ୍ଦ ଦିଏ । ସୁଖ ଦୁଃଖରେ ସମଭାଗୀ ସ୍ୱର, ଭାବ ଓ ଭଙ୍ଗୀ ସେ ରଖିଛି । ଆଜି ଆମ ଢୋଲ ଆମେ ପିଟୁଛୁ । ଉନ୍ନତ ହୋଇଛୁ, ଆମେ ଢୋଲ ପିଟାରେ ସ୍ୱାବଲମ୍ବୀ । ଯେଉଁ ଢୋଲ ପିଟା ଯୋଗୁଁ ଢୋଲିଆକୁ ଅପାଙ୍‌କ୍ତେୟ କରିଥିଲୁ ସେ ଢୋଲକୁ ଆମେ ଟାଣିଆଣି ଆମ ବେକରେ ଲମ୍ବାଇଛୁ । ଫଳ ହେଲା କଅଣ ? ଢୋଲିଆର ବେଉସା ବୁଡ଼ିଲା । ଢୋଲ ବାଜାର ମୌଳିକତା ରହିଲାନାହିଁ । ଆମେ ଖାଲି ଢୋଲ ଡାଉଁ ଡାଉଁ କଲୁ । ଅନ୍ୟଙ୍କୁ ଆନନ୍ଦ ଦେବାର ପ୍ରତିଶ୍ରୁତି ପରିବର୍ତ୍ତେ ନିଜ ଗରିମାର ଗର୍ଜନ ଶୁଣୁଛୁ । ଆତ୍ମବଡ଼ିମାର ବିଜ୍ଞାପନ ଭାବରେ ଢୋଲ ବାଜୁଛି । ଆତ୍ମପ୍ରତାରଣା ବୋଲି ଜାଣି ନପାରି ବଡ଼ିମା ପ୍ରକାଶର କୌଶଳ ଭାବରେ ଏହା

କରି ଚାଲିଛୁଁ । ଦଳ ଗଢ଼ିଲୁ । ଅନ୍ୟଙ୍କ ଉପରେ ଆକ୍ରମଣ କରିଛୁଁ । ଦଳକୁ ଶକ୍ତିଶାଳୀ କରିବାପାଇଁ ଦଳର କେନ୍ଦ୍ରବିନ୍ଦୁ ଭାବରେ ପ୍ରଚଳିତ ଜାତିପ୍ରଥାକୁ ଜାବୁଡ଼ି ଧରିଲୁ । ଆମର ଜାତିଟା ହେଲା ବଡ଼ । ଧର୍ମକୁ ମଧ୍ୟ ଅସ୍ତ୍ରଆଚ୍ଛ କଲୁ । ଆମ ଧର୍ମ ଶୈବ, ଶାକ୍ତ, ଗାଣପତ୍ୟ ଆଦିକୁ କେନ୍ଦ୍ରକରି ଦଳ ଗଢ଼ାଗଲା । ଏପରି ଏଇଠୁ ସାମ୍ପ୍ରଦାୟିକ କଳ୍ପନା । କଥାଟା ହେଉଛି ଆମ ସ୍ୱାର୍ଥସିଦ୍ଧି । "ଆମେ ବଞ୍ଚିଲେ ଆମ ବାପର ନାମ ପଡ଼ିବ । ଅନ୍ୟମାନେ ଧ୍ୱଂସ ପାଇଲେ ଆମର ବରଂ ଲାଭ ।" ଏହା ହେଉଛି ଚରମ ସ୍ୱାର୍ଥାନ୍ଧତା, ସମ୍ପୂର୍ଣ୍ଣ ଅମାନୁଷିକତା । ଅମାନୁଷିକ ହେଉ ପଛକେ ବର୍ତ୍ତମାନର ସ୍ୱାର୍ଥ ସଫଳ ହେଉ—ଏହାହିଁ ବିଚାର । ସେଥିପାଇଁ ସେମାନେ ଡାକହାକରେ ମିଛ କହନ୍ତି—ଦେଖାଶୁଣାରେ ଲାଞ୍ଚ ନଅନ୍ତି—ଜଣାଶୁଣାରେ କଳଙ୍କିତ ଓ କଦର୍ଯ୍ୟ କାମ କରିଯାଆନ୍ତି । ସେମାନଙ୍କ ହାତରେ କ୍ଷମତା ଅଛି । ଦଳ ରହିଛି । ସେମାନେ ଅନ୍ୟର ଆଖିରେ ଧୂଳି ପକାଇ ଅନ୍ୟାୟ କାମ କରି ଜିଣିଯାଉଛନ୍ତି । ଏହା ମଧ୍ୟ ସାଂପ୍ରଦାୟିକ ମନୋଭାବର ଦୃଷ୍ଟାନ୍ତ । ସାମ୍ପ୍ରଦାୟିକତା ଏକ ସଙ୍କୀର୍ଣ୍ଣ ବିଚାର । ଜାତି, ଗୋତ୍ର, ଅନ୍ଧବିଶ୍ୱାସ, ଧର୍ମାନ୍ଧତା ଦ୍ୱାରା ସମର୍ଥିତ ହୁଏ ସଂପ୍ରଦାୟ । ଏହା ଭିଣ୍ଡିକାଟେ । ବ୍ୟକ୍ତିବିଶେଷର ଭିଣ୍ଡି କାଟୁ କାଟୁ ସମାଜ ଓ ଦେଶର ବେକରେ ଛୁରିକା ଲଗାଇଦିଏ । ରାଷ୍ଟ୍ରୀୟ ଅଖଣ୍ଡତା ମୂଳରେ କୁଠାରାଘାତ କରେ । ସଂସ୍କୃତିର ଉଦାତ୍ତ ବିଚାରଧାରାର ଏହା ପରିପନ୍ଥୀ । ବିଶ୍ୱମାନବିକତାର ସ୍ଥାନ ସାଂପ୍ରଦାୟିକ ଓ ବିଚ୍ଛିନ୍ନତାବାଦୀ ମନୋଭାବରେ ଥାଏ ନାହିଁ । ଉଗ୍ର ସାଂପ୍ରଦାୟିକତା ପଶୁ ଜୀବନରୁ ଅଧିକ ହୀନ ଓ ନୀଚ ହୋଇଯାଏ ।

**ସାଂପ୍ରଦାୟିକତାର ପରିଣତି ବିଷମୟ ହୋଇପାରେ—**

ଦେଶ ମଧ୍ୟରେ କଳି, କୋଳାହଳ ଓ କନ୍ଦଳକୁ ଜାଗ୍ରତ କରି ରଖେ । ଆଭ୍ୟନ୍ତରୀଣ ଶାନ୍ତି ଓ ନିରାପତ୍ତା ରହେନାହିଁ । ଧନ ଜୀବନ କ୍ଷୟ ଓ ବିପନ୍ନ ହେବାରେ ଲାଗେ ।

ଆଭ୍ୟନ୍ତରୀଣ ଦୁର୍ବଳତା ବହିଃଶତ୍ରୁଙ୍କ ଆକ୍ରମଣକୁ ଆମନ୍ତ୍ରଣ କରେ । ରାଷ୍ଟ୍ରୀୟ ଅଖଣ୍ଡତା ଓ ଏକାତ୍ମତା ପ୍ରତି ବିପଦ ବରାବର ଲାଗିରହେ ।

ଦେଶର ରାଜନୈତିକ କ୍ଷମତା ଦୃଢ଼ ନହେବା ଫଳରେ କୌଣସି ବିକାଶମୂଳକ ଯୋଜନା କାର୍ଯ୍ୟକାରୀ କରିବାପାଇଁ ଅନୁକୂଳ ପରିବେଶ ସୃଷ୍ଟି ହୋଇପାରେ ନାହିଁ । ପ୍ରଗତି ନହୋଇପାରିବାରୁ ଦେଶର ସ୍ୱାଭିମାନ ଅନିଶ୍ଚିତ, ଅସ୍ଥିର ଓ ଅସ୍ପଷ୍ଟ ହୁଏ ।

ସାମ୍ପ୍ରଦାୟିକତାର ଭଉଁରିରେ ପଡ଼ି ବ୍ୟକ୍ତି ଦବିଯାଏ । ସୃଜନଶୀଳ ପ୍ରତିଭାର ବିକାଶ ଘଟିବାପାଇଁ ଅନୁକୂଳ ପରିବେଶ ମିଳେନାହିଁ । ଫଳରେ ଦେଶର ପ୍ରଗତି ସୁଦୂର-ପରାହତ ହୁଏ ।

ଜାତୀୟ ପ୍ରତୀକ ପ୍ରତି ସ୍ୱୀକୃତି ଓ ସମ୍ମାନର ସମ୍ଭାବନା ଉଜ୍ଜ୍ୱଳ ହୁଏ ନାହିଁ । ଲୋକ-ମାନଙ୍କ ଆଚରଣ ସମ୍ବିଧାନର ଅନୁରୂପ ନହୋଇ ପ୍ରତିକୂଳ ଗତିରେ ଚାଲେ ।

ଆମ ଦୀର୍ଘକାଳୀନ ମାନବିକ ମୂଲ୍ୟବୋଧର ଅବକ୍ଷୟ ଦ୍ରୁତ ହୁଏ । ସଂସ୍କୃତିର ଚିରନ୍ତନ

ସ୍ରୋତ ଲୁପ୍ତପ୍ରାୟ ହୋଇଯାଏ ସାମ୍ପ୍ରଦାୟିକ ସ୍ୱେଚ୍ଛାଚାର ଓ ଅରାଜକତା ଯୋଗୁଁ ।

ଏସବୁ ମାତ୍ର କେତୋଟି । ଏହି ଭୟାବହ ଓ ମାରାତ୍ମକ ପରିସ୍ଥିତିରୁ କିପରି ରକ୍ଷା ପାଇବାକୁ ହେବ ? মৃত୍ୟୁର ଅନ୍ଧକାର ଗହ୍ୱର ମଧ୍ୟରେ ପଡ଼ି ଜୀବନର ଅବସାନ ପାଇଁ ଆଲୋକ ଦେଖାଇବା କିମ୍ବା ଜୀବନର ଉଜ୍ଜ୍ୱଳ ସମ୍ଭାବନାର ବିକାଶ ଏବଂ ଗୌରବର ଚିତ୍ରକୁ ସାବଲୀଳ କରିବା । ଏହି ଦୁଇ ବିକଳ୍ପ ପନ୍ଥା ମଧ୍ୟରୁ ଆମେ ନିଶ୍ଚିତ ଭାବରେ ଦ୍ୱିତୀୟଟିକୁ ବରଣ ଓ ଗ୍ରହଣ କରିବା ଏବଂ ସେଥିପାଇଁ ଆବଶ୍ୟକ ପଡ଼ିଲେ ପ୍ରାଣପାତ କରିବାକୁ ପ୍ରସ୍ତୁତ ରହିବା । ତାହାହିଁ ଦେଶ ଓ ବିଶ୍ୱର ଉଜ୍ଜ୍ୱଳ ସମ୍ଭାବନା ଏବଂ ବସୁଧୈବ କୁଟୁମ୍ବକମ୍‌ର ଜୟଗାନ ଓ ରୂପାୟନ ।

ଏଥିପାଇଁ ଦୃଢ଼ ରାଜନୈତିକ ଇଚ୍ଛାଶକ୍ତି ଆବଶ୍ୟକ । ଦୁଇଟି ଦିଗରେ (୧) ସଙ୍କୀର୍ଣ୍ଣ ବିଚ୍ଛିନ୍ନତାବାଦୀ ସାମ୍ପ୍ରଦାୟିକତାର ମୂଳୋତ୍ପାଟନ, (୨) ଧର୍ମନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ରଗଠନରେ ସର୍ବବିଧ ପ୍ରୋତ୍ସାହନ । ସମାଜର ସବୁ ସ୍ତରରେ ଓ ଦେଶର ସମସ୍ତ ଅଞ୍ଚଳରେ ଏହି ଦୃଢ଼ ପ୍ରତିଜ୍ଞା ଓ ପାଳନର ଧ୍ୱନି ପ୍ରକାଶ ପାଇବା ଉଚିତ । ସାମ୍ପ୍ରଦାୟିକତା ବିରୁଦ୍ଧରେ ଦୃଢ଼ ସ୍ୱର କେବଳ ବାକ୍ୟରେ ଉଚ୍ଚାରଣ ନକରି କାୟ ଓ ମନରେ ପ୍ରକାଶ କରିବା । ଶିକ୍ଷା ଏକ ସଂଗଠିତ ଓ ଉଦ୍ଦେଶ୍ୟାଭିମୁଖୀ କାର୍ଯ୍ୟକ୍ରମ । ଶିକ୍ଷାୟତନ ଏକ ବ୍ୟବସ୍ଥିତ ଓ ସେ ଦିଗରେ ଅଭିଳଷିତ ସଂଗଠନ । ଆମେ ଶିକ୍ଷକ, ଆମ ଜୀବନ ଶିକ୍ଷାର୍ଥୀ ଓ ଆମେ ଶିକ୍ଷାର୍ଥୀ ଜୀବନ । କୁହାଯାଇଛି—The destiny of India is being shaped in her class room. ଆମେ ତାହାହିଁ କରିବା । ଆଉ ଗୋଟିଏ କଥା—ଆଜି ରକ୍ଷକ ଓ ଭକ୍ଷକର ଭୂମିକା ସ୍ୱତନ୍ତ୍ର ହୋଇ ନାହିଁ । ଜଣେ ଲୋକ ଡାହାଣୀ ହୋଇ ପୁଣି ଗୁଣିଆ ହେବାର ଦେଖାଯାଉଛି । ତେଣୁ ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷକ ତିନୋଟି କାମ କରିପାରିବେ । (୧) ସାମ୍ପ୍ରଦାୟିକତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କାୟ ମନ ଓ ବାକ୍ୟରେ, (୨) ଧର୍ମ-ନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ର ଗଠନରେ ସମର୍ପଣ ଓ (୩) ସାମାଜିକ ମୂଲ୍ୟବୋଧର ଅବକ୍ଷୟରେ ସଚେତନ ପ୍ରହରୀ ହୋଇ ରହିବା ।

**ଏହି ପରିପ୍ରେକ୍ଷୀରେ କେତୋଟି ସୂଚନା ଦିଆଯାଉଛି—**

—ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ଜୀବନ ଯାପନ ପାଇଁ ସର୍ବବିଧ ସୁଯୋଗ ଦିଆଯିବ । ସର୍ବଧର୍ମର ସମନ୍ୱୟ ଭିତ୍ତିରେ ଗଣତନ୍ତ୍ରର ମୂଲ୍ୟବୋଧକୁ ପାଠ୍ୟପୁସ୍ତକ, ଉପ-କରଣ ଓ ଶିକ୍ଷକଙ୍କ ମାଧ୍ୟମରେ ଶିକ୍ଷାର୍ଥୀ ଜୀବନରେ ରୂପାୟିତ କରାଯିବ ।

—ସାମ୍ପ୍ରଦାୟିକତା, ବୈଜ୍ଞାନିକ ଚିନ୍ତନ, ଚେତନା ଜୀବନ ଓ ମନୋଭାବର ବିରୋଧୀ । ତେଣୁ ବିଜ୍ଞାନ ଶିକ୍ଷାକୁ ବାସ୍ତବ ଓ ଜୀବନ୍ତ କରାଯିବ । ବିଜ୍ଞାନ ପୁସ୍ତକ ଓ ବିଜ୍ଞାନ ଶିକ୍ଷକଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏଥି ସହିତ ସବୁ ପାଠ୍ୟବିଷୟ ଓ ସମସ୍ତ ଶିକ୍ଷକ ତଥା ଶିକ୍ଷାୟତନ ବିଜ୍ଞାନଶିକ୍ଷାରେ ସହଯୋଗୀ ହେବେ ।

—ବ୍ୟକ୍ତିର ଉତ୍କର୍ଷ ଉପରେ ଆମ ଶିକ୍ଷା ବିଶେଷକରି ତତ୍ତ୍ୱପ୍ରସ୍ଥୁଙ୍ଗୀ ଧ୍ୟାନ ଦେଉଛୁ । ସାମାଜିକ ଦାୟିତ୍ୱ ଶିକ୍ଷା ବ୍ୟାବହାରିକ ସ୍ତରରେ ଦିଆଯିବା ଉଚିତ । ଦଳଗତ ପ୍ରକଳ୍ପଦ୍ୱାରା ଆମେ ବିଭିନ୍ନ ଭେଦ ବିରୋଧୀ କାର୍ଯ୍ୟକ୍ରମ ହାତକୁ ନେଇ ବ୍ୟକ୍ତିକୁ ଚିହ୍ନିବା ଓ ସମ୍ମାନ କରିବା । ସେଥିପାଇଁ ଉତ୍ପାଦନମୂଳକ କାର୍ଯ୍ୟକ୍ରମ ଅଧିକରୁ ଅଧିକ ସ୍ଥାନ ପାଇବା ଉଚିତ । ପାଠପଢ଼ାରେ ମଧ୍ୟ ଦଳଗତ ଆଲୋଚନା ଓ କର୍ମସମ୍ପାଦନା ରହିବା ଦରକାର ।

—ସମାଜସେବା ସମେତ ସମାଜ ସହଯୋଗୀ କାର୍ଯ୍ୟକ୍ରମ ସାମାଜିକ ପରିସରରେ କରାଯିବ । ଶିକ୍ଷାୟତନ ଏକ ସମାଜ ଦ୍ୱୀପ ନହୋଇ କେନ୍ଦ୍ର ହେବ ଏବଂ ସେଥିରୁ ନୂତନ ଚିନ୍ତା ବିଚ୍ଛୁରିତ ହେବା ସଙ୍ଗେ ସଙ୍ଗେ ସେଠାକୁ ସମାଜର ସମସ୍ୟା ଅଧ୍ୟୟନ ପାଇଁ ବହିଆସିବ ।

—ଶିକ୍ଷାୟତନ ହେଉଛୁ ସ୍ନେହ, ପ୍ରେମ ଓ କରୁଣାର ଅନୁଷ୍ଠାନ । ସେଠି ଜାତି, ଧର୍ମ, ଭାଷା, ବଡ଼ ସାନ, ଛୁଆଁ ଅଛୁଆଁର ଭେଦ ନାହିଁ । ଏହା ଏକ; ଯେଉଁଥିରେ ଅନେକ ପ୍ରବେଶ କରନ୍ତି ଓ ଉପଲବ୍ଧି କରନ୍ତି ଏକତ୍ୱ ବିଭେଦ ମଧ୍ୟରେ । ସେଠି ବଡ଼ବଡ଼ିଆଙ୍କ ଛୁଆକୁ ବାଳୁତ ବାସୁଦେବ କରି କାନ୍ଧରେ ବସାଇ ଲୋକଙ୍କ ଆଗରେ ଯେଇ ଯେଇ କରିବା ଓ ହରିଜନ ଝିଅଟିକୁ କଂସାସୁର ପରି ଶିଳରେ କଚାଡ଼ିବା ଚଳିବ କି ? କ୍ଷମତାର ପୁଅ ଓ ଅକ୍ଷମର ଝିଅ ସମାନ ମୋ ଆଖିରେ ଓ ପ୍ରତ୍ୟେକଙ୍କର ସର୍ବୋତ୍ତମ ବିକାଶ ହେବାଯାଏଁ ମୁଁ ଲାଗିପଡ଼ିଥିବି, କେବେହେଁ ଛାଡ଼ିବି ନାହିଁ ।

—ଗୋତ୍ରସୂଚକ ସଞ୍ଜ୍ଞା ଉଠାଇ ଦେବା ପାଇଁ ଆନ୍ଦୋଳନ ହେବା ଉଚିତ । ସେ ପର୍ଯ୍ୟନ୍ତ ଏ ବିଷୟରେ ଅବହିତ ହେବା ଅନୁଚିତ । ପିତାଙ୍କ ଜାତି, ଧର୍ମ, ବ୍ୟବସାୟ, ଧନ, ରାଜନୀତି ଆଦି ନଜାଣିଲେ ଭଲ ଓ ସେଥିରୁ ଲାଭ ଲୋଭ ନକରିବା ଅଧିକ ଭଲ ।

—ବ୍ୟଙ୍ଗ ବିଦ୍ରୂପରେ କୌଣସି ଜାତିଙ୍କୁ ପ୍ରକାଶ କରିବା ମାରାତ୍ମକ । ଆମ ଭାଷାରେ ଏପରି ଅନେକ ଚଳଣି ରହିଛି । ଏହାକୁ ଯେ କହନ୍ତି ତାଙ୍କ ଗର୍ବ, ଗୌରବ ଓ ଗରିମାର ସୂଚନା ମିଳେ ଓ ଯାହାଙ୍କ ବିଷୟରେ କୁହାଯାଏ ତାଙ୍କ ହୃଦରେ ଛୁରିପରି ଭେଦିଯାଏ । ବରଂ ସ୍ନେହ ଓ ସମ୍ମାନ—"ସକଳ ଦେହେ ନାରାୟଣ" ପରି !

—ମୋ ଅନୁଷ୍ଠାନ ହେଉଛି ସଂଯମ, ସଦ୍‌ଭାବ ଓ ସାଧ୍ୟାୟର ପବିତ୍ର ପୀଠ । କବିଗୁରୁଙ୍କର "ଏକଲା ଚଲୋ"ର ବେଳ ଗଡ଼ିଗଲାଣି । ତଥାପି ମୋ କଣ୍ଠକୁହରରେ ଏହା ଶବ୍ଦଧ୍ୱନିତ ହେଉଛି । ସୁରୁଚି ଓ ସୁନୀତିର ସଂସାରରେ ମୋ ଧ୍ରୁବ ଓ ଉତ୍ତମ ଉତ୍ତାନପାଦ ହୋଇରହିବେ ।

—ହେ ମୋର ଶିକ୍ଷାର୍ଥୀ, ସତ୍ୟ, ଶିବ, ସୁନ୍ଦର । ସେ ମୋର ଗୁରୁ, ଶିଷ୍ୟ । ମୁଁ ସମସ୍ତ କୁସଂସ୍କାର ଓ ଭ୍ରାନ୍ତ ଧାରଣାରୁ ମୁକ୍ତ ହେବି । ନାମ, ଜାତି, କୁଳ ଓ ରୂପ ମୋ ବିଗ୍ରହରେ ମୋତେ ମୋହଗ୍ରସ୍ତ ନକରୁ । ମୋ ପ୍ରାର୍ଥନା, ହେ ମୋର ପିଲା, ବାଳକ, ଶୁଭ, ଓ ଶୁଭଦ ହୁଅ । ହେ ମୋର ଯୁବ ସମ୍ପ୍ରଦାୟ, ଶ୍ରେଷ୍ଠତ୍ୱ ପ୍ରାପ୍ତ ହୁଅ । ହେ ମୋର ବିଶ୍ୱ, ଶାନ୍ତିଲାଭକର ।

ଆଉ ଦୁଇଟି ବାଣୀ ଶ୍ରବଣ କରିବା, ସ୍ମରଣ କରିବା ଓ ଚିନ୍ତନ କରିବା । ଗୋଟିଏ : ଶ୍ରୁତି ମତ—

କର୍ମଶୀଲାଃ ଗୁଣାଃ ପୂଜ୍ୟାଃ, ତଥା ଜାତିକୁଳେ ନହି ।
ନ ଜାତ୍ୟାଃ ନକୁଳେ ନୈବ, ଶ୍ରେଷ୍ଠତ୍ୱଂ ପ୍ରତିପଦ୍ୟତେ ॥

ଜାତି ଓ କୁଳରେ ଶ୍ରେଷ୍ଠତା ପ୍ରତିପାଦନ କରାଯାଏ ନାହିଁ । କର୍ମ, ଗୁଣ ଓ ଆଚରଣକୁ ଆଧାର କରି ଶ୍ରେଷ୍ଠତା ପ୍ରତିପାଦନ କରିବା ଉଚିତ ।

ଅନ୍ୟଟି : ସୁବ୍ରହ୍ମଣ୍ୟମ ଭାରତୀଙ୍କର—

ବାରବାର ହାଁ ଧାରବାର ଭାରତ ଭୂମି ବନ୍ଦନା କରେଙ୍ଗେ ।
ହମ ବନ୍ଦେ ମାତରମ କହେଙ୍ଗେ / ଉଚ, ନୀଚ କା ଭେଦ ଭୂଲାକର
ଜାତି ଧର୍ମ କା ଦମନ କରେଙ୍ଗେ / ହମ୍ ବନ୍ଦେ ମାତରମ୍ କହେଙ୍ଗେ ।

ଏ ସବୁର ଅନ୍ୟ ଏକ ଧ୍ୱନି ଉତ୍କଳମଣିଙ୍କ ସ୍ୱାଧୀନ ଭାରତ ଭାବନାରେ ମର୍ମସ୍ପର୍ଶୀ ଓ ସାବଲୀଳ ହୋଇଛି :

ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିଆନ / ଶିଖ ଜୈନ ଯେତେ ଭାରତ ସନ୍ତାନ ।
ଯେତେ ଧର୍ମ ଯେତେ ବର୍ଣ୍ଣ ଜାତି କୁଳ / ଭାରତ ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ / ଏକଇ ଅନୁଭୂତି, ଏକଇ ଜ୍ଞାନ ।
ଏକ କର୍ମ ଖେଳ ଏକ୍ ମାତୃ ପଦେ / କରି ଏକ ପ୍ରାଣ ସମ୍ପଦେ ବିପଦେ ।
ଏକତାମନ୍ତ୍ରେ ରଖି ସଦା ମତି / ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।

ଏହି ସ୍ୱରାଜ୍ୟପ୍ରାପ୍ତିର ସଂଗ୍ରାମ-ଭୂଇଁ ଆମ ପରିବାର, ପାଠଶାଳା ଓ ସମାଜ ହେଉ ।

---